

NEHRU
BAL PUSTAKALAYA



# ଗୌତମ ବୁଦ୍ଧ

ଲୀଲ୍ କର୍କ

Digitized by srujanika@gmail.com

ନେହେରୁ ବାଲ ପୁସ୍ତକାଳୟ



# ଗୌତମ ବୁଦ୍ଧ

ଲୀଲା ଜର୍ଜ

ଅନୁବାଦ

ଉଦୟ ନାଥ ଷଡଙ୍ଗୀ

ଚିତ୍ର

ଡି. ଏନ୍. ବ୍ରହ୍ମା








ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

Digitized by srujanika@gmail.com

# ଯୁବରାଜ ସିଦ୍ଧାର୍ଥ

ଅଢ଼େଇ ହଜାର ବର୍ଷରୁ ଅଧିକ ହେଲାଣି । ଭାରତବର୍ଷର ହିମାଳୟ ପାଦଦେଶରେ ଗୋଟିଏ ସମୃଦ୍ଧ ରାଜ୍ୟ ଥିଲା । ଶାକ୍ୟ ଗୋଷ୍ଠୀର ଲୋକ-ମାନେ ସେଠାରେ ବାସ କରୁଥିଲେ । ସେମାନଙ୍କ ରାଜା ଥିଲେ ଶୁଦ୍ଧୋଦନ । ତାଙ୍କ ରାଣୀଙ୍କ ନାମ ମହାମାୟା । ସେମାନଙ୍କ ରାଜଧାନୀ ଥିଲା କପିଳବାସ୍ତୁ—ଗୋଟିଏ ସୁନ୍ଦର ସହର ।



Digitized by srujanika@gmail.com



ରାତିରେ ମହାମାୟା ବିଚିତ୍ର ସ୍ୱପ୍ନ ଦେଖିଲେ । ସ୍ୱପ୍ନଟି ହେଉଛି, ଚାରିଜଣ ରାଜା ତାଙ୍କୁ କାନ୍ଧରେ ବସାଇ ଗୋଟିଏ ମନୋରମ ହ୍ରଦ କୂଳକୁ ନେଇଗଲେ । ତାହା ରଜତ ପାହାଡ଼ ଉପରେ ଅବସ୍ଥିତ । ସେ ହ୍ରଦରେ ରାଣୀ ସ୍ନାନ କଲେ, ଝିଲ୍‌ମିଲ୍ ଲୁଗାର ପୋଷାକ ପିନ୍ଧିଲେ, ଫୁଲଗଦି ଉପରେ ଶୋଇଲେ । ତାହାପରେ ରାଜାମାନେ ତାଙ୍କୁ ଗୋଟିଏ ଇନ୍ଦ୍ରପୁରୀ ଭଳି ରାଜଉଆସକୁ ନେଇଗଲେ । ସେଠାରେ ସୁବର୍ଣ୍ଣ ପଲଙ୍କ ଉପରେ ଶୁଆଇ ଦେଲେ । ଗୋଟିଏ ଧଳା ହାତୀ ତା' ଶୁଣ୍ଢରେ ପଦ୍ମ ଫୁଲଟିଏ ଧରି ସେଠାକୁ ଆସିଲା । ରାଣୀଙ୍କ ଶଯ୍ୟା ଚାରି ପାଖରେ ତିନିଥର ବୁଲି ଶୁଣ୍ଢରେ ଆଉଁସି ଦେଲା ।

ପଣ୍ଡିତମାନେ ବାଖ୍ୟା କଲେ, ଏ ସ୍ୱପ୍ନରୁ ସୂଚନା ମିଳୁଛି, ମହାମାୟା ଶୀଘ୍ର ଗୋଟିଏ ପୁତ୍ର ସନ୍ତାନ ଜନ୍ମ କରିବେ । ସେ ହେବ ଜଣେ ମହାନ୍ ପୁରୁଷ ।

ଏହା ଭିତରେ କେତେ ଦିନ କଟିଗଲା । ମହାମାୟା ଜାଣି ପାରିଲେ ଯେ ସେ ଶୀଘ୍ର ମା'ହେବାକୁ ଯାଉଛନ୍ତି । ଗୋଷ୍ଠୀର ପ୍ରଥା ଅନୁସାରେ ସେ ପିତାଙ୍କ ଘରକୁ ଯିବା ପାଇଁ ବାହାରିଲେ । ମାତ୍ର ପଥ ମଧ୍ୟରେ ଲୁମ୍ବିନୀଠାରେ ଗୋଟିଏ ଶାଳଗଛ ତୋଟାରେ ତାଙ୍କର ପୁତ୍ରସନ୍ତାନଟିଏ ଜନ୍ମ ଗ୍ରହଣ କଲା ।

ମହାମାୟା ସେହିଠାରୁ କପିଳବାସ୍ତୁକୁ ଫେରି ଆସିଲେ । ରାଜା ଶୁଦ୍ଧୋଦନ ମା'ଓ ପୁଅଙ୍କୁ ଉଲ୍ଲାସର ସହିତ ପାଛୋଟି ନେଲେ । ରାଜ୍ୟରେ ଆନନ୍ଦର ଢେଉ ଖେଳିଗଲା ।

Digitized by srujanika@gmail.com



ଅଳ୍ପ ସମୟ ପରେ ବୃଦ୍ଧ ଋଷି ଅସୀତ, ମା' ଓ ପୁଅଙ୍କୁ ଦେଖିବାକୁ ଆସିଲେ । ଗୋଟିଏ ଦିନର ଶିଶୁ--ଯୁବରାଜଙ୍କୁ କୋଳରେ ଧରି ଉଲ୍ଲସିତ ହୋଇ କହି ଉଠିଲେ, ''ଏହି ପିଲା ଜଣେ ମହାନ୍ ପୁରୁଷ ହେବ ।'' ତତ୍ପରେ ତାଙ୍କ ଆଖିରୁ ବିନ୍ଦୁ ବିନ୍ଦୁ ଲୋତକ ଧାର ବୋହି ଗାଲ ତିନ୍ତାଇ ଦେଲା ।

ଶୁଦ୍ଧୋଦନ ଏହା ଦେଖି ଶଙ୍କିତ ହୋଇ ଉଠିଲେ । ବହୁ ଉଦ୍‌ବେଗର ସହ ପ୍ରଶ୍ନ କଲେ, ''ମୋ ପୁଅ ପ୍ରତି କଅଣ ବିପଦ ପଡ଼ିବ କି ?''

''ମୁଁ ପିଲା ଲାଗି କାନ୍ଦୁ ନାହିଁ''—ଅସୀତ ଉତ୍ତର ଦେଲେ । ମୋ ପାଇଁ ମୁଁ କାନ୍ଦୁ ଅଛି । ଏହି ଶିଶୁ ଦିନେ ପୃଥିବୀରେ ମୁକ୍ତି ବାର୍ତ୍ତା ପ୍ରଚାର କରିବ । ମୁଁ ବୁଢ଼ା ହୋଇଗଲିଣି । ସେହି ଦିନ ଦେଖିବାକୁ ବଞ୍ଚି ରହିପାରି ନ ଥିବି । ଏଇ ଦୁଃଖରେ ମୁଁ କାନ୍ଦି ପକାଇଲି । ଏହା କହିବା ସଙ୍ଗେ ସଙ୍ଗେ ଋଷି ଫେରିପଡ଼ି ନିଜ ବାଟରେ ଚାଲିଗଲେ ।

ଅସୀତଙ୍କ ଭବିଷ୍ୟତ୍ ବାଣୀ ଶୁଣି ରାଜା ଓ ରାଣୀ ଖୁସି ହେଲେ ପୁତ୍ରର ନାମ ଦେଲେ,'ସିଦ୍ଧାର୍ଥ' ।

ପିଲା ଜନ୍ମର ସପ୍ତମ ଦିନ ମହାମାୟା ପ୍ରାଣତ୍ୟାଗ କଲେ । ତାଙ୍କ ଭଉଣୀ-ଶୁଦ୍ଧୋଦନଙ୍କ ଦ୍ୱିତୀୟା ରାଣୀ ପ୍ରଜାପତି ପିଲାଟିକୁ ଆଣି ନିଜ ପୁଅ ଭଳି ଲାଳନପାଳନ କଲେ ।

ରାଜା ଶୁଦ୍ଧୋଦନ ଦେଶ ବିଦେଶରୁ ବହୁ ଜ୍ଞାନୀ ପଣ୍ଡିତମାନଙ୍କୁ ନିମନ୍ତ୍ରଣ କରି ଆଣିଲେ । ସେମାନଙ୍କୁ ପ୍ରଶ୍ନ କଲେ, ''ମୋ ପୁଅର

Digitized by srujanika@gmail.com

ଭବିଷ୍ୟତ କଅଣ ହେବ ?''

ସେ ସମୟରେ ଅସୀତଙ୍କ କଥାରେ ସମ୍ମତି ଜଣାଇଲେ, ''ଏ ନିଶ୍ଚୟ ରଜାମାନଙ୍କର ରଜା ହେବ । ସମଗ୍ର ପୃଥିବୀରେ ପ୍ରସିଦ୍ଧି ଲାଭ କରିବ ।''

''କିନ୍ତୁ କିପରି ?'' ରଜା ଜାଣିବାକୁ ଚାହିଁଲେ ।

''ସେ ପୃଥିବୀ ଜୟ କରିବ ।''—ପଣ୍ଡିତମାନଙ୍କ ମଧ୍ୟରୁ ଜଣେ କହିଲେ ।

''ଯଦି ସେ ଘର-ସଂସାର କରେ ।'' ଅନ୍ୟ ଜଣେ ମତ ଦେଲେ ।

''ସେ ଜଣେ ବିଶ୍ୱବିଖ୍ୟାତ ଶିକ୍ଷାଦାତା ହେବ ।'' ତୃତୀୟ ପଣ୍ଡିତ ଘୋଷଣା କଲେ ।

''ଯଦି ସେ ଘର-ସଂସାର ଛାଡ଼ି ଚାଲି ଯାଆନ୍ତି ସନ୍ନ୍ୟାସୀ ହେବା ପାଇଁ'' ଚତୁର୍ଥ ପଣ୍ଡିତ ଯୋଗ କଲେ ।

ଶିକ୍ଷାଦାତାର ସମ୍ମାନ ରଜା ଶୁଦ୍ଧୋଦନଙ୍କୁ ଆକୃଷ୍ଟ କଲା ନାହିଁ । ସେ ଚାହୁଁଥିଲେ, ତାଙ୍କ ପୁଅ କେବଳ କ୍ଷତ୍ରୀୟ ରୀତି ନୀତି ଅନୁସରଣ କରୁ । ସେ ହେଉ ପୃଥିବୀ ବିଜେତା ।

''ଯଦି ସଂସାର ତ୍ୟାଗ କରି ଶିକ୍ଷାଦାତା ହେବା ତୁମେ ପସନ୍ଦ କରୁ ନାହଁ, ତେବେ ଯୁବରାଜଙ୍କୁ ସବୁ ପ୍ରକାର ଦୁଃଖ କଷ୍ଟରୁ ଦୂରରେ ରଖ ।'' ସମସ୍ତ ପଣ୍ଡିତ ସାବଧାନବାଣୀ ଶୁଣାଇଦେଲେ ।

ତେଣୁ ଶୁଦ୍ଧୋଦନ ସ୍ଥିର କଲେ, ପୁଅକୁ ସବୁବେଳେ ସୁଖୀ ରଖିବାକୁ ଉଦ୍ୟମ କରିବେ । ସବୁଠାରୁ ବେଶୀ ସୁନ୍ଦର ପରିସ୍ଥିତି ଭିତରେ ସେ ଦିନ କାଟିବେ । ସେ ତିନିଗୋଟି ଉଆସ ନିର୍ମାଣ କରାଇଲେ । ଗୋଟିଏ ଗ୍ରୀଷ୍ମ ଋତୁ ପାଇଁ—ବଡ ବଡ ଗଛଲତା ପରିବେଷ୍ଟିତ ଉଦ୍ୟାନ ମଧ୍ୟରେ ଏହା ଯେପରି ଛାୟା ପ୍ରଦାନ କରିବ, ସେହି ଭଳି ଶୀତଳ ପବନ ବହିବାରେ ସାହାଯ୍ୟ କରିବ । ଅନ୍ୟ ଗୋଟିଏ ଉଆସ ହେଲା ଶୀତ ଋତୁ ପାଇଁ—ପ୍ରାଙ୍ଗଣରେ ଉଜ୍ଜ୍ୱଳ ସୂର୍ଯ୍ୟ କିରଣ ଓ ଉତ୍ତାପର ଯେପରି ଅଭାବ ନ ହେବ । ତୃତୀୟଟି ହେଲା ବର୍ଷାକାଳ ବିତାଇବା ଲାଗି । ପ୍ରଶସ୍ତ କକ୍ଷ-ଘର ମଧ୍ୟରେ ରହି ସବୁ ପ୍ରକାର ଖେଳ ଓ କ୍ରୀଡ଼ା କସରତ କରିବାର ସୁବିଧା ହେବ ।

ଏହି ତିନୋଟିଯାକ ଉଆସ ଚାରିପଟରେ ସୁନ୍ଦର ପୁଷ୍ପ ଉଦ୍ୟାନ ଓ ପଦ୍ମ ଫୁଲ ଶୋଭିତ ପୁଷ୍କରିଣୀ ଶୋଭା ପାଇଲା । ଜଗୁଆଳମାନଙ୍କୁ

Digitized by srujanika@gmail.com



ନିର୍ଦ୍ଦେଶ ଦିଆଗଲା, କେବଳ ସୁସ୍ଥ ବଳିଷ୍ଠ ଯୁବକମାନଙ୍କୁ ଯେପରି ଉଆସ ମଧ୍ୟକୁ ଛାଡ଼ି ଦିଆଯିବ ।

ଏଠାରେ ସିଦ୍ଧାର୍ଥ ବେଶ୍ ଆରାମ ଓ ବିଳାସପୂର୍ଣ୍ଣ ଜୀବନ କଟାଇଲେ । କୋମଳ ସୂକ୍ଷ୍ମ ଶିଲ୍କ ପୋଷାକ ବ୍ୟତୀତ ତାଙ୍କୁ ଆଉ କିଛି ପରିଧାନ କରିବାକୁ ଦିଆଗଲା ନାହିଁ । ଖରା-ବର୍ଷା ଶୀତରେ ପଦାକୁ ବାହାରିବାକୁ ପଡ଼ିଲା ନାହିଁ । ତାଙ୍କର ପ୍ରତ୍ୟେକ କାର୍ଯ୍ୟ ପାଇଁ ଶହ ଶହ ଦାସ ଦାସୀ ନିଯୁକ୍ତ ରହିଲେ । ତାଙ୍କ ଖେଳସାଥୀ ହେଲେ ଖୁଡ଼ୁତା ପୁଅ ଭାଇ, ଦେବଦତ୍ତ ଏବଂ ମନ୍ତ୍ରୀପୁତ୍ର କାଳୁ ଦାୟିନ୍ । ସେ ଶାକ୍ୟମାନଙ୍କର ଅତି ପ୍ରିୟ ହୋଇଗଲେ—କାରଣ ରାଜାଙ୍କ ବଂଶଧର । ପ୍ରଜାମାନେ ତାଙ୍କୁ ସମ୍ବୋଧନ କଲେ, ଗୌତମ—କାରଣ ସେ ଗୌତମ ଗୋତ୍ରୀୟ ଥିଲେ ।

ଦିନେ ଉଆସରେ ଉଦ୍ୟାନ ମଧ୍ୟରେ ଘୁରି ବୁଲୁଥିଲା ବେଳେ ସିଦ୍ଧାର୍ଥ ଦେଖିଲେ ପଞ୍ଚାଏ ହଂସ ମୁଣ୍ଡ ସିଧା ଆକାଶରେ ଉଡ଼ି ଯାଉ-

Digitized by srujanika@gmail.com



ଅଛନ୍ତି । ଠିକ୍ ସେହି ସମୟରେ ଗୋଟିଏ ତୀର ଶୂନ୍ୟକୁ ଚ୍ଛଳି ଯାଉଥିବାର ଶବ୍ଦ ଶୁଣି ପାରିଲେ ଏବଂ ଦେଖିଲେ ଗୋଟିଏ ପକ୍ଷୀ ତଳେ ପଡ଼ିଗଲା ମୁମୂର୍ଷୁ ଅବସ୍ଥାରେ ।

ସିଦ୍ଧାର୍ଥ ତା' ପାଖକୁ ଦୌଡ଼ିଗଲେ । ଆସ୍ତେ ଆସ୍ତେ ତୀରଟି ତା' ଦେହରୁ ଟାଣି ଆଣିଲେ । କ୍ଷତ ସ୍ଥାନରେ ପତ୍ରରସର ପ୍ରଲେପ ଲଗାଇ ଦେଇ ତାକୁ ଆଉଁସିବାକୁ ଲାଗିଲେ । ସେତିକି ବେଳେ ଦେବଦତ୍ତ ସେଠାରେ ପହଞ୍ଚିଗଲେ ଏବଂ ପକ୍ଷୀଟିକୁ ତାଙ୍କୁ ଦେଇ ଦେବାକୁ ଦାବୀ କଲେ । ମାତ୍ର ସିଦ୍ଧାର୍ଥ ପକ୍ଷୀଟିକୁ ଦେବାକୁ ନାସ୍ତି କରିଦେଲେ ।

ଦେବଦତ୍ତ ରାଜା ଶୁଦ୍ଧୋଦନଙ୍କ ପାଖରେ ଗୁହାରି କଲେ, "ମୁଁ ତୀର ମାରି ପକ୍ଷୀଟିକୁ ତଳେ ଖସାଇ ପକାଇଛି । ସେ ମୋର । କିନ୍ତୁ ସିଦ୍ଧାର୍ଥ ମୋତେ ଦେଉ ନାହାନ୍ତି ।"

ଯେତେବେଳେ ଶୁଦ୍ଧୋଦନ ନିଜ ପୁଅ ମୁହଁକୁ ଚାହିଁଲେ, ସେତେ-

Digitized by srujanika@gmail.com

ବେଳେ ସିଦ୍ଧାର୍ଥ ଉତ୍ତର ଦେଲେ, "ମୁଁ ହଂସଟିର ପ୍ରାଣରକ୍ଷା କରିଅଛି । ଦେବଦତ୍ତ ଚାହୁଁଥିଲେ ତାକୁ ମାରି ଦେବା ପାଇଁ । ଯେ ଜୀବନ ରକ୍ଷା କରିଅଛି, ପକ୍ଷୀଟି କଅଣ ତାହାରି ପ୍ରାପ୍ୟ ନୁହେଁ ? ଯେ ତାକୁ ମାରି ଦେବାକୁ ଚାହୁଁଥିଲା, ତାର ଆଉ କି ଅଧିକାର ଅଛି ?"

ଏହି ଯୁକ୍ତି ରଜାଙ୍କୁ ମୁଗ୍ଧ କଲା । ପକ୍ଷୀଟି ସିଦ୍ଧାର୍ଥଙ୍କର ପ୍ରାପ୍ୟ ବୋଲି ସେ ନିର୍ଦ୍ଦେଶ ଦେଲେ ।

ସିଦ୍ଧାର୍ଥ କ୍ରମେ ବଡ଼ ହେଲେ । ଶୁଦ୍ଧୋଦନ ରଜ୍ୟର ସବୁଠାରୁ ଜ୍ଞାନୀ ପଣ୍ଡିତମାନଙ୍କ ଉପରେ ତାଙ୍କ ଶିକ୍ଷାର ଭାର ଦେଲେ । ପୁତ୍ର ବୁଦ୍ଧିମାନ୍, ଚତୁର । ସେ ସବୁ ପ୍ରକାର ବିଦ୍ୟା ଅତି ଅଳ୍ପ ଦିନରେ ଆୟତ୍ତ କରି-ନେଲେ । କେବଳ ପୋଥିଗତ ବିଦ୍ୟା ନୁହେଁ; ରଜ୍ୟ ଶାସନ ପାଇଁ ଯାହା ସବୁ ପ୍ରୟୋଜନ—କୁସ୍ତି, ଅଶ୍ୱଚାଳନା, ତୀରରେ ଲକ୍ଷ୍ୟ ଭେଦ କରିବା, ସେ ସବୁରେ ମଧ୍ୟ ଦକ୍ଷ ହୋଇ ଉଠିଲେ ।

ଏହି ଦୟାର୍ଦ୍ର ଭଦ୍ର ପିଲାଟି ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଗୋଟିଏ ବଳିଷ୍ଠ, ସୁନ୍ଦର, ଚରିତ୍ରବାନ୍ ଯୁବକ ହୋଇ ଉଠିଲେ । ସେ ଲୋକପ୍ରିୟ, ବିଚାରବନ୍ତ ଓ ଅତି ଭଦ୍ର ବ୍ୟବହାରରେ ସମସ୍ତଙ୍କୁ ଆପଣାର କରି-ନେଲେ । ଏକ ପାରିବାରିକ ମିଳନରେ ସେ ସୁନ୍ଦରୀ କିଶୋରୀ ଯଶୋଧାରଙ୍କୁ ଦେଖିବାକୁ ପାଇଲେ; ତାଙ୍କୁ ସ୍ନେହ କଲେ ।

ସେ ସମୟର ରଜପରିବାରର ରୀତି ଅନୁଯାୟୀ ଯଶୋଧାରଙ୍କ ପିତା ଗୋଟିଏ ଧନୁଯାତ୍ରାର ଆୟୋଜନ କଲେ । ସେହି ଧନୁମଖ ପ୍ରତି-ଯୋଗିତାରେ ଯେଉଁ ବଳିଷ୍ଠ ଓ ସୌମ୍ୟ ରଜପୁତ୍ର ଜୟଲାଭ କରିବ, ଯଶୋଧାରଙ୍କୁ ସେ ବିବାହ କରିବ । ସିଦ୍ଧାର୍ଥ ଏ ପ୍ରତିଯୋଗିତାରେ ଯୋଗ ଦେଇ କୃତିତ୍ୱ ଲାଭ କରିବେ ଓ ଯଶୋଧାରଙ୍କୁ ବିବାହ କରିବେ ବୋଲି ମନ କଲେ ।

ବହୁ ରଜକୁମାର ଏ ପ୍ରତିଯୋଗିତାରେ ଯୋଗ ଦେଇଥିଲେ । ସେମାନେ ବିଭିନ୍ନ ଦେଶରୁ ଏପରିକି ବହୁ ଦୂର ଅଞ୍ଚଳରୁ ଯଶୋଧାରଙ୍କୁ ପାଇବା ଆଶାରେ ଆସିଥିଲେ । ସେମାନେ ବେଶ ବଳବାନ୍, ଧନୀ ଓ ଆତ୍ମଗର୍ବୀ ବୋଲି ଜଣା ଯାଉଥିଲେ । ସେମାନଙ୍କ ତୁଳନାରେ ସିଦ୍ଧାର୍ଥ ସୁକୁମାର, ଲାବଣ୍ୟବଣ ଓ ଧୀରସ୍ଥିର ଥିଲେ । ପ୍ରତ୍ୟେକ ଦର୍ଶକ ଭାବୁଥିଲେ ପ୍ରତିଯୋଗିତାରେ ସେ ନିଶ୍ଚୟ ପରାଜିତ ହେବେ ।

Digitized by srujanika@gmail.com

ମାତ୍ର ଅତି ଶୀଘ୍ର ସେମାନଙ୍କର ଭାବନା ଦୂର ହୋଇଗଲା । ପ୍ରତିଯୋଗିତାରେ ସିଦ୍ଧାର୍ଥ ଯେ କାହାରିଠାରୁ ନ୍ୟୂନ ନୁହନ୍ତି, ସେମାନେ ତାହା ବୁଝି ପାରିଲେ ।

ସଭାସ୍ଥଳକୁ ଧନୁ ଅଣାଗଲା । ପ୍ରତିଯୋଗୀମାନେ ତାକୁ ବଙ୍କାଇ ଗୁଣ ବାନ୍ଧି ଶର ନିକ୍ଷେପ କଲେ ଲକ୍ଷ୍ୟସ୍ଥଳକୁ । ଶୂନ୍ୟକୁ ଶର ମାରିଲେ । ସିଦ୍ଧାର୍ଥ ମଧ୍ୟ ସେହି ଭଳି ଶର ମାରି ନିଜର ଦକ୍ଷତାର ପ୍ରମାଣ ଦେଲେ ।

ଶେଷରେ ଗୋଟାଏ ବଡ଼ ଓ ଟାଣୁଆ ଧନୁ ଆଣିବା ଲାଗି ସିଦ୍ଧାର୍ଥ କହିଲେ । ସେହିପରି ଧନୁଟିଏ ଅଣାଗଲା । ତାହା ଶିବଧନୁ ନାମରେ ଖ୍ୟାତ । ଯେପରି ଦୃଢ଼, ସେହିପରି ଭାରି । ମନ୍ଦିର ମଧ୍ୟରେ ରଖାଯାଇ ତାକୁ ପୂଜା କରା ଯାଉଥିଲା । ତାହା ଏତେ ଶକ୍ତ ଯେ ସାଧାରଣ ଯୁବକ ତାକୁ ବଙ୍କାଇ ଗୁଣ ବାନ୍ଧି ପାରିବ ନାହିଁ । ପ୍ରତିଯୋଗୀମାନେ ତାକୁ ଦେଖି ଡରିଗଲେ । ଅଳ୍ପ କେତେ ଜଣ ଧନୁ ପାଖକୁ ଗଲେ । ମାତ୍ର ତାକୁ ଉଠାଇ ନ ପାରି ଫେରି ଆସିଲେ । ଦର୍ଶକମାନେ ଉତ୍କଣ୍ଠାର ସହିତ ଚାହିଁ ବସି ଥାଆନ୍ତି । ସିଦ୍ଧାର୍ଥ ଧନୁଟିକୁ ଟେକି ଆଣିଲେ ଏବଂ ଅକ୍ଳେଶରେ ବଙ୍କାଇ ଦେଇ ଗୁଣ ଦଉଡ଼ା ବାନ୍ଧି ଦେଲେ । ତା'ପରେ ଆକାଶକୁ ଶର ମାରିଲେ । ଶରଟି ଗର୍ଜନ କରିକରି ଶୂନ୍ୟରେ ମିଳେଇଗଲା ।

ଅନ୍ୟ ରାଜପୁତ୍ରମାନେ ପରାଜୟ ସ୍ୱୀକାର କଲେ । ଜଣ ଜଣ ହୋଇ ସମସ୍ତେ ସଭା ଛାଡ଼ି ଚାଲିଗଲେ । ସିଦ୍ଧାର୍ଥ ବିଜୟୀ ବୋଲି ଘୋଷଣା କରାଗଲା । ଶୁଦ୍ଧୋଦନ ଖୁସି ହେଲେ । ତାଙ୍କର ଦୃଢ଼ ବିଶ୍ୱାସ ହେଲା ଯେ ପୁଅ ଦିନେ ବିଶ୍ୱବିଜେତା ହେବ । ସେ କେବେ ହେଲେ ଘର ସଂସାର ତ୍ୟାଗ କରିବ ନାହିଁ କି ଏଭଳି ସୁନ୍ଦରୀ ପତ୍ନୀ ଯଶୋଧାରାଙ୍କଠାରୁ ଅନ୍ତର ହୋଇ ପାରିବ ନାହିଁ ।



Digitized by srujanika@gmail.com

# ସତ୍ୟର ଅନୁସନ୍ଧାନ

ସିଦ୍ଧାର୍ଥ ତାଙ୍କ ଉଆସରେ ସୁନ୍ଦରୀ ସ୍ତ୍ରୀ ସହ ସୁଖରେ ଦିନ କାଟିଲେ । ସେ ଯେପରି ସବୁବେଳେ ବେଶ ଫୁର୍ତ୍ତି ଓ ପ୍ରଫୁଲ୍ଲ ମନରେ ସମୟ କଟାଇବେ, ସେଥିପାଇଁ ଶୁଦ୍ଧୋଦନ ବରବର ଯତ୍ନଶୀଳ ଥାଆନ୍ତି । ସିଦ୍ଧାର୍ଥ ଆଦୌ ଜାଣନ୍ତି ନାହିଁ ଯେ ଦୁନିଆରେ କୌଣସି ପ୍ରକାର ଦୁଃଖ ବା ଯାତନା ଅଛି ।

Digitized by srujanika@gmail.com

କୌଣସି ପ୍ରକାରେ ସିଦ୍ଧାର୍ଥଙ୍କ ମନରେ ଧାରଣା ହେଲା, ଏ ଉଆସ ପଡ଼ା ବାହାରେ ଗୋଟାଏ ଦୁନିଆ ଅଛି । ତାହା କିପରି ଜାଣିବା ପାଇଁ ତାଙ୍କର ଇଚ୍ଛା ହେଲା । ସେ ସମସ୍ତ ସମୟରେ ଏକାକୀ ଉଆସର ଉଦ୍ୟାନ ଭିତରେ ଘୁରି ବୁଲୁଥିଲେ । ଘଣ୍ଟା ଘଣ୍ଟା ଧରି ଗୋଟିଏ ସ୍ଥାନରେ ନୀରବରେ ବସି ରହୁଥିଲେ । ତନ୍ମୟତାର ସହିତ ଭାବନାରେ ବୁଡ଼ି ଯାଉଥିଲେ ।

ଦିନେ ସେ କହିଲେ, "ବାହାରର ଦୁନିଆ କିପରି, ତାହା ଦେଖିବାକୁ ମୋର ଆଗ୍ରହ ହେଉଛି ।" ଶୁଦ୍ଧୋଦନ ଏହା ଶୁଣି ଆପତ୍ତି କଲେ ନାହିଁ । "ଭଲ କଥା" ସେ ଭାବିଲେ, "ଯୁବରାଜ ତାଙ୍କ ରାଜ୍ୟ ବୁଲି ଦେଖିବା ଏବଂ ପ୍ରଜାମାନଙ୍କ ସହିତ ମିଶିବାର ଏ ପ୍ରକୃଷ୍ଟ ସମୟ । ସେହି ପ୍ରଜା-ମାନଙ୍କୁ ତ ସେ ଦିନେ ଶାସନ କରିବ ?"

ଶୁଦ୍ଧୋଦନ ଆଦେଶ ଜାରି କଲେ, "ସିଦ୍ଧାର୍ଥ ବୁଲି ବାହାରିଲେ । ସହରର ରାସ୍ତାଘାଟ ସବୁ ପରିଷ୍କାର ରହିବ । ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପାଇଁ ସ୍ଥାନେ ସ୍ଥାନେ ଆନନ୍ଦଦାୟକ ତୋରଣମାନ ନିର୍ମିତ ହେବ । ରାସ୍ତା କଡ଼ର ଗୃହ ସବୁ ଫୁଲ ପତ୍ରରେ ସଜ୍ଜିତ ହେବ । କଡ଼ା-କଡ଼ି ନିର୍ଦ୍ଦେଶ ଦିଆଗଲା ଯେ ସିଦ୍ଧାର୍ଥ ଯିବା ବାଟରେ ଯେପରି କୌଣସି ବୃଦ୍ଧ ବା ରୁଗ୍ଣ ବ୍ୟକ୍ତିଙ୍କ ଦର୍ଶନ ନ ମିଳେ । ସେମାନଙ୍କୁ ସହରର ବାହାରକୁ ବିଦାୟ କରି ଦିଆଯିବ । ପୁଅ ଯେପରି ମନୁଷ୍ୟର କୌଣସି ପ୍ରକାର ଦୁଃଖ ଯନ୍ତ୍ରଣା ଦେଖିବାକୁ ନ ପାଇବ, ଶୁଦ୍ଧୋଦନ ସେଥିପ୍ରତି ସବୁପ୍ରକାର ସତର୍କତା ଅବଲମ୍ବନ କରିଥିଲେ ।

ଚାରିଗୋଟି ତେଜୀୟାନ୍ ସୁନ୍ଦର ଧଳା ଘୋଡ଼ା ଟାଣୁଥିବା ରଥରେ ବସି ସିଦ୍ଧାର୍ଥ ନଗର ଭ୍ରମଣରେ ବାହାରିଲେ । ସାରଥୀ ଛନ୍ଦକ ଧୀରେ ଧୀରେ ତାହା ଚଳାଇଲେ । ରାସ୍ତାର ଦୁଇ କଡ଼ରେ ଲୋକମାନେ ଧାଡ଼ିବାନ୍ଧି ଠିଆ ହୋଇ ସେମାନଙ୍କ ଯୁବରାଜଙ୍କୁ ଦେଖି ଆନନ୍ଦରେ ଅଭିବାଦନ ଜଣାଇଲେ ।

ସିଦ୍ଧାର୍ଥ ଦୁଇ ହାତ ଯୋଡ଼ି ସେମାନଙ୍କ ଅଭିବାଦନ ଗ୍ରହଣ କଲେ । "ପ୍ରଜାମାନେ ବେଶ୍ ସୁଖରେ ଅଛନ୍ତି" ସେ ମନରେ ଭାବିଲେ । ପ୍ରକୃତରେ ଦୁନିଆଟା ଗୋଟାଏ ଆନନ୍ଦ ଉଲ୍ଲାସର ସ୍ଥାନ ।"

ମାତ୍ର ସେ ଆଉ ଅଧିକ କିଛି ଦେଖିବାକୁ ମନ କଲେ । "ଚାଲ ସେ ବାଟରେ ଯିବା"—ଛନ୍ଦକକୁ ନିର୍ଦ୍ଦେଶ ଦେଲେ ।

Digitized by srujanika@gmail.com

ଛନ୍ଦକ ଗୋଟିଏ ଛୋଟ ଗଳି ରାସ୍ତାରେ ରଥ ଚଳାଇଲେ । ସେ ଅଞ୍ଚଳକୁ ସିଦ୍ଧାର୍ଥ ଆସିବେ—ଏହା ଲୋକମାନେ କଳ୍ପନା କରି ନ ଥିଲେ । ସେ ଅଞ୍ଚଳରେ ସ୍ୱାଗତ ଜଣାଇବାର କୌଣସି ଆୟୋଜନ କରାଯାଇ ନ ଥିଲା । ରାସ୍ତା ଅପରିଷ୍କାର ଥିଲା ଓ ଲୋକଗହଳି ଲାଗି ରହିଥିଲା । ବାଡ଼ି ଭରା ଦେଇ ଅଣ୍ଟା ଭାଙ୍ଗି ଯାଇଥିବା ଜଣେ ବୃଦ୍ଧ ବ୍ୟକ୍ତି ଛୋଟେଇ ଛୋଟେଇ ଚାଲି ଯାଉଥିବାର ସିଦ୍ଧାର୍ଥ ଦେଖିବାକୁ ପାଇଲେ ।



Digitized by srujanika@gmail.com

ତା ମୁହଁରେ ଯନ୍ତ୍ରଣାର ସଙ୍କେତ ।

"ଏପୁଣି କିଏ ?" ସେ ଆଶ୍ଚର୍ଯ୍ୟର ସହିତ ପ୍ରଶ୍ନ କଲେ ।

"ଗୋଟିଏ ବୃଦ୍ଧ ଲୋକ ।" ଛନ୍ଦକଙ୍କ ଉତ୍ତର ।

ନବରକୁ ଫେରି ସିଦ୍ଧାର୍ଥ ବିରସ ମନରେ ଭାବନାରେ ମଗ୍ନ ରହିଲେ ।

"ଲାବଣ୍ୟମୟୀ ଯଶୋଧାରାର କଅଣ ଏହିପରି ବୃଦ୍ଧାବସ୍ଥା ଆସିଯିବ ? ନିଜେ ମଧ୍ୟ କଅଣ ଏହିପରି ବୁଢ଼ା ହୋଇଯିବେ ?"

ଯେତେବେଳେ ଶୁଦ୍ଧୋଦନ ଏହାର ସୂଚନା ପାଇଲେ, ସେ ପୁଅର ମନ ବଦଳାଇବାକୁ କେତେକ ଶିଳ୍ପୀଙ୍କୁ ପଠାଇ ନୃତ୍ୟ-ଗୀତର ବ୍ୟବସ୍ଥା କରିଦେଲେ । ସେହି ସମୟ ପାଇଁ ସେ କୃତକାର୍ଯ୍ୟ ହେଲେ । ମାତ୍ର ବାହାର ଦୁନିଆ ସିଦ୍ଧାର୍ଥଙ୍କ ମନକୁ ଆକୃଷ୍ଟ କଲା । ସେ ଆଉ କିଛି ଦେଖିବାକୁ ଇଚ୍ଛା ପ୍ରକାଶ କଲେ । ତେଣୁ ସହର ବୁଲି ଯିବାକୁ ଆଉ ଥରେ ବ୍ୟବସ୍ଥା କରାଗଲା ।

ପୂର୍ବ ଭଳି ପ୍ରଜାମାନେ ଯୁବରାଜଙ୍କୁ ଉତ୍ସାହର ସହିତ ଅଭିବାଦନ ଜଣାଇଲେ । "ମନୁଷ୍ୟ ଜୀବନ ନିଶ୍ଚୟ ସୁଖକର" ଯୁବରାଜ କଳ୍ପନା କରିନେଲେ । ମାତ୍ର ଉଆସକୁ ଫେରି ଆସିବା ସମୟରେ ସେ ଜଣେ ରୁଗ୍ଣ ବ୍ୟକ୍ତିଙ୍କୁ ଦେଖିବାକୁ ପାଇଲେ । ସେ ବଡ଼ କଷ୍ଟରେ ପାଦ ପକାଉଥିଲେ । ସର୍ବାଙ୍ଗ ଘାʼରେ ପୂରି ରହିଥିଲା । ଯନ୍ତ୍ରଣାରେ ସେ ବିକଳ ହୋଇ କାନ୍ଦୁଥିଲା ।

"ସେ ଲୋକଟି ଏପରି କାହିଁକି କାନ୍ଦୁଚି ?" ଯୁବରାଜ ପ୍ରଶ୍ନ କଲେ ।

ଛନ୍ଦକ ଉତ୍ତର ଦେଲେ, "ସେ ଗୋଟିଏ ରୋଗୀ । ରୋଗ ତାକୁ ଯନ୍ତ୍ରଣା ଦେଉଛି ।"

ପ୍ରତ୍ୟେକ ଲୋକ ଭାଗ୍ୟରେ ଏହିପରି ରୋଗ ଯନ୍ତ୍ରଣା ଭୋଗିବାକୁ ପଡ଼ିଥାଏ—ଛନ୍ଦକ କଥାରୁ ଏହା ହିଁ ବୁଝାଗଲା ।

ଦୁଃଖ ଓ ଯନ୍ତ୍ରଣା ଯେ ପୃଥିବୀରେ ଅଛି, ଏହା ଯୁବରାଜଙ୍କ ଅନ୍ତରକୁ ପ୍ରଥମେ ସ୍ପର୍ଶ କଲା ।

ପୁଣି ଆଉ ଦିନେ ସେ ରଥରେ ବସି ନଗର ପରିଭ୍ରମଣ କଲାବେଳେ ଗୋଟିଏ ମୃତ ଦେହ ଶ୍ମଶାନକୁ ନିଆ ଯାଉଥିବାର ଦେଖିଲେ ।

Digitized by srujanika@gmail.com

"ସେ ଲୋକଟିକୁ ଏପରି ଭାବରେ ସେମାନେ କେଉଁଠାକୁ ନେଉଛନ୍ତି ?"—ସିଦ୍ଧାର୍ଥ ପଚାରିଲେ ।

"ସେ ମନୁଷ୍ୟଟି ମୃତ" ଛନ୍ଦକ ଉତ୍ତର ଦେଲେ । ଲୋକମାନେ ଦାହ କରିବା ପାଇଁ ତାକୁ ନେଇ ଯାଉଛନ୍ତି ।" ବିଶ୍ଳେଷଣ କରି ବୁଝାଇ ଦେଲେ, "ପୃଥିବୀରେ ଯେ ଜନ୍ମ ହୁଅନ୍ତି, ଦିନେ ନା ଦିନେ ସେ ଏହିପରି ମୃତ୍ୟୁ ମୁଖରେ ପଡ଼ିବେ ।"

"ବୃଦ୍ଧାବସ୍ଥା, ରୋଗ ଯନ୍ତ୍ରଣା, ମୃତ୍ୟୁ ! ପୃଥିବୀ ପ୍ରକୃତରେ ଗୋଟାଏ ଦୁଃଖଦାୟକ ସ୍ଥାନ"—ପରଦୁଃଖ କାତର ଯୁବରାଜ ଉପଲବ୍ଧି କଲେ । ଏହି ଭାବନାରେ ସେ ମ୍ରିୟମାଣ ହୋଇ ପଡ଼ିଲେ । ପୃଥିବୀରେ ଏତେ ଦୁଃଖ, ଏତେ ଦୁର୍ବିପାକ କାହିଁକି, ତାହା ଜାଣିବାକୁ ତାଙ୍କ ମନ ଅସ୍ଥିର ହୋଇ ଉଠିଲା ।

ପରେ ସେ ନିଜ ରଥରେ ବସି ନଗର ବୁଲି ଯାଉଥିବା ବେଳେ ଜଣେ ଯୋଗୀଙ୍କୁ ଦେଖାପାଇଲେ । ସେ ହଳଦିଆ ରଙ୍ଗର ପୋଷାକ ପିନ୍ଧିଥିଲେ ଏବଂ ଅତି ଧୀର, ପ୍ରଫୁଲ୍ଲ ଓ ଶାନ୍ତ ଦେଖାଯାଉଥିଲେ ।

"ଏ ଲୋକଟି କିଏ ?" ଆଗ୍ରହର ସହିତ ସିଦ୍ଧାର୍ଥ ପ୍ରଶ୍ନ କଲେ ।

"ଜଣେ ସାଧୁ ।" ଛନ୍ଦକଙ୍କ ଉତ୍ତର । "ସେ ଘର ସଂସାର ତ୍ୟାଗ କରି ଅଛନ୍ତି । ସବୁ ପ୍ରକାର ଦୁଃଖ ଯନ୍ତ୍ରଣା ପ୍ରତି ଉଦାସୀନ । ତାଙ୍କ ମନ



Digitized by srujanika@gmail.com



ସବୁ ଅବସ୍ଥାରେ ଶାନ୍ତ-ନିଶ୍ଚଳ, ଚିରନ୍ତନ ସତ୍ୟ ଅନୁସନ୍ଧାନରେ ରତ ।”

ଏହା ସିଦ୍ଧାର୍ଥଙ୍କ ମନରେ କେତେକ ପରିମାଣରେ ଆଶା ସଞ୍ଚାର କରାଇଲା । ସେ ତାଙ୍କରି ପରି ହେବା ପାଇଁ ମନରେ ପାଞ୍ଚିଲେ । ସ୍ଥିର ସିଦ୍ଧାନ୍ତ କଲେ, ଘର ସଂସାରର ମୋହ ତ୍ୟାଗ କରି ସନ୍ନ୍ୟାସୀ ହେବେ ।

ଗଭୀର ଭାବରେ ଏହି ଭାବନା ତାଙ୍କ ମନରେ ଖେଳୁଥିଲା ବେଳେ ତାଙ୍କର ଗୋଟିଏ ପୁତ୍ର ସନ୍ତାନ ହେଲା । ଶିଶୁଟିର ନାମ ଦିଆଗଲା ‘ରାହୁଳ’। ପୁତ୍ର ଲାଭରେ ଆନନ୍ଦିତ ହେବେ କଅଣ, ବରଂ ସଂସାର ତ୍ୟାଗ କରିବା ଭାବନା ତାଙ୍କ ମନକୁ ଅଧିକ ପ୍ରଭାବିତ କଲା । ସେ ସ୍ଥିର ସଙ୍କଳ୍ପ କଲେ, ଆଉ ବିଳମ୍ବ ନ କରି ଏ ବନ୍ଧନରୁ ମୁକ୍ତ ହେବାକୁ ପଡିବ ।

Digitized by srujanika@gmail.com

ସେତେବେଳକୁ ସିଦ୍ଧାଥଙ୍କ ବୟସ ଅଣତ୍ରିଶ ବର୍ଷ ମାତ୍ର । ରାତିର ଶେଷ ଭାଗରେ ସେ ବିଛଣାରୁ ଉଠିଲେ । ସେତେବେଳେ ସ୍ତ୍ରୀ ଯଶୋଧାରା ନିଦ୍ରାମଗ୍ନ—ପୁତ୍ର ରାହୁଲ ଉପରେ ଗୋଟିଏ ହାତ ରଖି ଗାଢ ନିଦ୍ରାରେ ଶୋଇ ଅଛନ୍ତି । ପିଲାଟିକୁ ଶେଷଥର ପାଇଁ ଟିକିଏ କୋଳକୁ ନେବା ପାଇଁ ଭାବିଲେ; ମାତ୍ର ଭୟ କଲେ, କାଳେ ଯଶୋଧାରାଙ୍କ ନିଦ ଭାଙ୍ଗିଯିବ । ଦ୍ୱିତୀୟ ଥର ପାଇଁ ସୁନ୍ଦର ପୁଅ ଆଡକୁ ଆଉ ନ ଚାହିଁ ସେ ଅତି ତରତରରେ ଶୟନ କକ୍ଷରୁ ବାହାରି ପଡିଲେ ।

ବିଶ୍ୱସ୍ତ ସାରଥୀ ଛନ୍ଦକକୁ ଉଠାଇ ତା ସାହାଯ୍ୟରେ ଜଙ୍ଗଲ ମଧ୍ୟକୁ ଚାଲିଗଲେ । ସେ ନିଜ ମସ୍ତକର କେଶଗୁଚ୍ଛ କାଟି ଦେଇ ଛନ୍ଦକ ହାତରେ ତାହା ନଗରକୁ ପଠାଇଦେଲେ, ସେଥିରୁ ଯେପରି ସମସ୍ତେ ବୁଝି ପାରିବେ ଯେ ସିଦ୍ଧାର୍ଥ ରାଜଭୋଗ ଛାଡି ଜଣେ ସନ୍ନ୍ୟାସୀ ହୋଇଗଲେ । ତା'ପରେ ସତ୍ୟର ଅନୁସନ୍ଧାନରେ ଗଭୀର ଜଙ୍ଗଲ ମଧ୍ୟରେ ପ୍ରବେଶ କଲେ ।

ସିଦ୍ଧାର୍ଥ ହେଲେ ଶାକ୍ୟ ମୁନି — ଶାକ୍ୟ ବଂଶର ଜଣେ ଗୃହତ୍ୟାଗୀ ସାଧୁ । ସତ୍ୟର ସନ୍ଧାନ ପାଇଁ ବୁଲୁ ବୁଲୁ ପ୍ରଧାନ ସହର ବୈଶାଳୀରେ ଯାଇ ସେ ପହଞ୍ଚିଲେ । ସେଠାରେ ପ୍ରସିଦ୍ଧ ଋଷି, ଭବିଷ୍ୟତ୍ବକ୍ତା ଆଳର କାଳମଙ୍କ ଆଶ୍ରମରେ ପ୍ରକୃତ ଜୀବନ କଅଣ, ତାହା ଜାଣିବା ପାଇଁ ଅବସ୍ଥାନ କଲେ । ସେଠାରେ ଜୀବନର ବିବିଧ ଧାରା ଶିକ୍ଷା କଲେ । ମାତ୍ର ସେଥିମଧ୍ୟରୁ କୌଣସିଟିରେ ତାଙ୍କର ମନଃପୂତ ହେଲା ନାହିଁ ।

ତତ୍ପରେ ସେ ରାଜଗୃହରେ ପହଞ୍ଚିଲେ । ସେ ସମୟର ପ୍ରସିଦ୍ଧ ରାଜ୍ୟ ମଗଧର ତାହା ରାଜଧାନୀ । ଜ୍ୟୋତିମାନ୍ ପଣ୍ଡିତ ଉଦ୍ରକଙ୍କ ପ୍ରତିଷ୍ଠିତ ଆଶ୍ରମରେ କିଛିକାଳ ଶିକ୍ଷାଲାଭ କଲେ । ସେ ଉଦ୍ରକଙ୍କ ଅଗାଧ ଜ୍ଞାନ ଦେଖି ଚମତ୍କୃତ ହେଲେ । ମାତ୍ର ଶୀଘ୍ର ବୁଝି ପାରିଲେ ଯେ କେବଳ ପାଣ୍ଡିତ୍ୟ ତାଙ୍କ ଆକାଂକ୍ଷିତ ସତ୍ୟ ପାଇବାରେ କିଛି ସାହାଯ୍ୟ କରି ପାରିବ ନାହିଁ । ସେ ଆଶ୍ରମ ତ୍ୟାଗ କରି ପୁଣି ସତ୍ୟ ଅନୁସନ୍ଧାନରେ ଘୁରି ବୁଲିଲେ ।

ଜୀବନକୁ ଯନ୍ତ୍ରଣା ଦେଇ କୃଚ୍ଛ୍ର ସାଧନରେ ତପସ୍ୟା କଲେ ସତ୍ୟ-ପ୍ରାପ୍ତି ହେବ କି ? ଗୌତମ ଚିନ୍ତା କଲେ, ପ୍ରାଚୀନ କାଳର ମୁନି ଋଷିଙ୍କ ଭଳି ସେ ସେହି ତପସ୍ୟାରେ ରତ ରହିବା ସ୍ଥିର କଲେ । ପାଞ୍ଚ ଜଣ

Digitized by srujanika@gmail.com



ସଂସାର ତ୍ୟାଗୀ ସାଧୁ ତାଙ୍କୁ ଭେଟି ତାଙ୍କର ଅନୁଗାମୀ ହେଲେ । ଏହି ପାଞ୍ଚ ଜଣ ଅନୁଗାମୀଙ୍କ ଗହଣରେ ସେ ଘୋର ଜଙ୍ଗଲ ମଧ୍ୟରେ ପ୍ରବେଶ କଲେ ଏବଂ ସେଠାରେ ତପସ୍ୟାରେ ଧ୍ୟାନମଗ୍ନ ରହିଲେ । ସେ ଦେହକୁ ସବୁପ୍ରକାର ଯନ୍ତ୍ରଣା ଦେଲେ; ଉପବାସ ରହି ମୁମୂର୍ଷୁ ଅବସ୍ଥାକୁ ଆସିଗଲେ । ତଥାପି ସେ ଯେ ଆକାଂକ୍ଷିତ ସତ୍ୟର ସନ୍ଧାନ ପାଇବାକୁ ସମର୍ଥ ହେଉ ନାହାନ୍ତି, ତାହା ବୁଝି ପାରିଲେ । କଠୋର କୃଚ୍ଛ୍ର ସାଧନା ସତ୍ୟ ସନ୍ଧାନରେ ସହାୟକ ହେବ ନାହିଁ, ଏହି ଧାରଣା ହେଲା । ସେ ତପସ୍ୟା ତ୍ୟାଗ କଲେ । ପାଞ୍ଚ ଜଣଯାକ ଶିଷ୍ୟ ଓସ ତପସ୍ୟାରେ ବିଫଳ ହେଲେ ବୋଲି ଭାବି ତାଙ୍କୁ ଛାଡ଼ି ଚାଲିଗଲେ ।

ସିଦ୍ଧାର୍ଥ ନିକଟବର୍ତ୍ତୀ ନିରଞ୍ଜନା ନଦୀକୂଳକୁ ଗଲେ ଏବଂ ସ୍ନାନ କଲେ । ସେ ଏତେ ବେଶୀ ଦୁର୍ବଳ ହୋଇ ଯାଇଥିଲେ ଯେ ନଦୀର

Digitized by srujanika@gmail.com

ସ୍ରୋତରେ ଭସି ଯାଉଥିଲେ । ବହୁ ସାଧ୍ୟ ସାଧନା କରି କୌଣସି ମତେ କୂଳରେ ଲାଗିଲେ । ନିକଟବର୍ତ୍ତୀ ଜନପଦରେ ବାସ କରୁଥିବା ଜଣେ ଯୁବତୀ–ସୁଜାତା କିଛି କ୍ଷୀରି ଆଣି ତାଙ୍କୁ ଖାଇବାକୁ ଦେଲେ । ଦୀର୍ଘ ଦିନର ଉପବାସ ପରେ ଭୋଜନ କରି ସେ ଟିକିଏ ଶାନ୍ତି ପାଇଲେ ।

ଶେଷରେ ସିଦ୍ଧାର୍ଥ ସିଦ୍ଧାନ୍ତ କଲେ, ସତ୍ୟ ଲାଭ କରିବାର ପ୍ରକୃଷ୍ଟ ପନ୍ଥା ହେଉଛି ଧ୍ୟାନରତ ହେବା । ଗୟା ସହରର ଉପକଣ୍ଠରେ ଗୋଟିଏ ରମଣୀୟ ସ୍ଥାନ ବାଛିଲେ ଏବଂ ସେଠାରେ ଥିବା ପିପ ପଳ ବୃକ୍ଷ ତଳେ ପଦ୍ମାସନ ପକାଇ ବସି ଧ୍ୟାନ କଲେ । ''ଯେ ପର୍ଯ୍ୟନ୍ତ ସତ୍ୟ କଅଣ ତାହା ହୃଦବୋଧ ନ ହୋଇଛି, ସେ ପର୍ଯ୍ୟନ୍ତ ମୁଁ ଏଠାରୁ ଉଠିବି ନାହିଁ'' ଏହା ହିଁ ହେଲା ତାଙ୍କର ପ୍ରତିଜ୍ଞା ।

କୁହାଯାଏ, ଏହି ଧ୍ୟାନମଗ୍ନ ଥିବା ସମୟରେ ସିଦ୍ଧାର୍ଥଙ୍କୁ ନାନା ପ୍ରଲୋଭନରେ ବିଚଳିତ କରାଇ ଦେବାର ଉଦ୍ୟମ ହୋଇଥିଲା । ପାପ-ଗ୍ରହ 'ମାର' ଭୟ କଲା, ସିଦ୍ଧାର୍ଥ ସତ୍ୟ ଲାଭ କରି ସଂସାରରେ ତାହା ପ୍ରଚାର କଲେ ତାର କରାମତି ଆଉ ଚାଲିବ ନାହିଁ ।

ପ୍ରଥମେ ସିଦ୍ଧାର୍ଥଙ୍କୁ ତାଙ୍କ ରାଜନଗରର ଦୃଶ୍ୟ ଦେଖାଇ ମୋହାଚ୍ଛନ୍ନ କରିବାକୁ ଉଦ୍ୟମ କଲା । ତାଙ୍କ ସୁନ୍ଦରୀ ସ୍ତ୍ରୀ ଯଶୋଧାରା ଓ ଶିଶୁପୁତ୍ର ରାହୁଳ ତାଙ୍କ ଆଖି ଆଗରେ ଦୃଶ୍ୟ ହେଲେ । ମାତ୍ର ସିଦ୍ଧାର୍ଥ ସେ ମାୟାରେ ଭୁଲିଗଲେ ନାହିଁ; ନିଜ ଧ୍ୟାନରେ ଅବିଚଳିତ ରହିଲେ । ତାପରେ 'ମାର' ଭୀଷଣ ଝଡତୋଫାନ ସୃଷ୍ଟି କଲା ତାଙ୍କୁ ଭୟଭୀତ କରାଇଦେବା ପାଇଁ । ସିଦ୍ଧାର୍ଥ ସେଥିରେ ମଧ୍ୟ ବିଚଳିତ ହେଲେ ନାହିଁ । ଶେଷରେ 'ମାର' ନିଜର ତିନି କନ୍ୟାଙ୍କୁ ପଠାଇଲା ସିଦ୍ଧାର୍ଥଙ୍କ ଧ୍ୟାନଭଙ୍ଗ କରିବା ଲାଗି । କାମନା, ବାସନା ଓ କାମପ୍ରବୃତ୍ତି ଆସି ସିଦ୍ଧାର୍ଥଙ୍କ ଆଗରେ ନୃତ୍ୟ କରିବାକୁ ଲାଗିଲେ ତାଙ୍କୁ ଧ୍ୟାନରୁ ଟଳାଇଦେବା ଲାଗି । ମାତ୍ର ସେମାନେ ମଧ୍ୟ ବିଫଳ ହୋଇ ଫେରିଗଲେ । ସିଦ୍ଧାର୍ଥ ଗଭୀର ଧ୍ୟାନରେ ବୁଡି ରହିଲେ ।

ଅଣଚାଶ ଦିନ ଧ୍ୟାନରତ ରହିବା ପରେ ସିଦ୍ଧାର୍ଥ ସତ୍ୟ ଉପଲବ୍ଧି କଲେ । ସେ ହେଲେ ବୁଦ୍ଧ—ଆଲୋକପ୍ରାପ୍ତ ବ୍ୟକ୍ତି । ଯେଉଁ ବୃକ୍ଷ ମୂଳରେ ସିଦ୍ଧାର୍ଥ ଧ୍ୟାନବନ୍ଦ ହୋଇ ସତ୍ୟ ଲାଭ କରିଥିଲେ, ସେହି ବୃକ୍ଷକୁ ସେଥିପାଇଁ କୁହାଯାଏ 'ବୋଧିଦ୍ରୁମ' ।

Digitized by srujanika@gmail.com

# ମହତ୍ ପଥ

ସିଦ୍ଧାର୍ଥ ବୁଦ୍ଧତ୍ୱ ପ୍ରାପ୍ତି ପରେ ଚିନ୍ତା କଲେ, ସେ ଲାଭ କରିଥିବା ସତ୍ୟ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିବେ । ସେ ଜାଣିଥିଲେ, ସଂସାର ଅଜ୍ଞାନ ଓ ଦୁର୍ନୀତିରେ ବୁଡି ରହିଛି, "ଏହି ପରିସ୍ଥିତିରେ ତାଙ୍କ କଥା କଅଣ କେହି ଶୁଣିବେ ?" ଏହି ସନ୍ଦେହ ମନରେ ଖେଳିଗଲା । ସେ ବୁଝିପାରିଲେ, ଏହି କାର୍ଯ୍ୟ ଦୁଃସାଧ୍ୟ । ମାତ୍ର ମନୁଷ୍ୟ ଜାତିର କଲ୍ୟାଣ ଲାଗି ସେ ଏପରି ଉଦ୍‌ବୁଦ୍ଧ ହୋଇଥିଲେ ଯେ ସତ୍ୟ ପ୍ରଚାର ପାଇଁ ଆଗଭର ହେଲେ । ଲୋକମାନଙ୍କୁ ନିଜ ଲବ୍‌ଧ ସତ୍ୟରେ ଆଲୋକିତ କରିବା ପାଇଁ କେତେକ ଅନୁଗତ ଶିଷ୍ୟଙ୍କ ଅନୁସନ୍ଧାନ କରିବାକୁ ମନସ୍ଥ କଲେ ।

Digitized by srujanika@gmail.com

ବୁଦ୍ଧଦେବଙ୍କର ପ୍ରଥମେ ମନେ ପଡ଼ିଲେ, ଯେଉଁ ପାଞ୍ଚ ଜଣ ସନ୍ନ୍ୟାସୀ ତାଙ୍କୁ ଛାଡ଼ି ଚାଲି ଯାଇଥିଲେ । ସେମାନେ ଏବେ ମଧ୍ୟ ବାରଣାସୀ ନିକଟସ୍ଥ ସାରନାଥରେ କଷ୍ଟସାଧ୍ୟ ସାଧନାରେ ରତ ଅଛନ୍ତି । ପରଦୁଃଖ କାତର ବୁଦ୍ଧ ସେଠାରୁ ସାରନାଥ ଯାତ୍ରା କଲେ ।

ପୂର୍ବର ସେହି ଅନୁଗାମୀ ପାଞ୍ଚ ଜଣ ତାଙ୍କୁ ଦୂରରୁ ଦେଖି ପାରିଲେ । "ଏଇ ଆମର ସେହି ପୂର୍ବର ଗୁରୁ ଏଣିକି ଆସୁଛନ୍ତି ।" ସେମାନଙ୍କ ମଧ୍ୟରୁ ଜଣେ କହି ଉଠିଲେ ।

ଦ୍ୱିତୀୟ ଜଣକ ବିଦ୍ରୂପ କଲା, "ଘର ସଂସାର କରିବାକୁ ସେ ଯେ ଆମକୁ ଛାଡ଼ି ଦେଇଥିଲେ ।"

"ଏବେ ମଧ୍ୟ ସେ ତ ସନ୍ନ୍ୟାସୀ ଭଳି ଜଣା ଯାଉଛନ୍ତି"—ତୃତୀୟ ବ୍ୟକ୍ତି ମନ୍ତବ୍ୟ ଦେଲେ ।

"ଆମେ ତାଙ୍କୁ କୌଣସି ପ୍ରକାର ସମ୍ମାନ ଦେଖାଇବା ନାହିଁ ।" ସମସ୍ତେ ସିଦ୍ଧାନ୍ତ କଲେ ।

ମାତ୍ର ବୁଦ୍ଧ ଯେତେବେଳେ ସେମାନଙ୍କ ନିକଟବର୍ତ୍ତୀ ହେଲେ, ସେମାନେ ଦେଖିଲେ ତାଙ୍କ ଚାରି ପାଖରେ ଗୋଟାଏ ଜ୍ୟୋତିର୍ମଣ୍ଡଳ ଘେରି ରହିଛି । ସେମାନେ ଅନୁଭବ କଲେ, ଜଣେ ଦିବ୍ୟ ପୁରୁଷ ସେମାନଙ୍କ ନିକଟରେ ଉପସ୍ଥିତ । ତାଙ୍କ ବାଣୀ ଶୁଣିବା ପାଇଁ ପାଖରେ ଆସି ବସିଲେ । ଏହି ପାଞ୍ଚ ଜଣ ଶିଷ୍ୟଙ୍କୁ ପ୍ରଥମେ ବୁଦ୍ଧଦେବ ଦୀକ୍ଷା ଦେଇଥିଲେ । "ସବୁ ପ୍ରକାର ଆସକ୍ତିକୁ ଦୂର କରିବାକୁ ହେବ"— ବୁଦ୍ଧଦେବ ଏହି ଧର୍ମୋପଦେଶ ତାଙ୍କ ଶିଷ୍ୟମାନଙ୍କୁ ଦେଉଥିଲେ । ସେ କହୁଥିଲେ, ନାନା କଷ୍ଟ ସହି କୃଚ୍ଛ୍ର ସାଧନ ବା ପ୍ରାୟଶ୍ଚିତ କରିବା ଯେତିକି ଅହିତକର, ଭୋଗ ବିଳାସରେ ମାତି ଜୀବନ କଟାଇବା ମଧ୍ୟ ସେତିକି କ୍ଷତିକାରକ । ମନୁଷ୍ୟ ମଧ୍ୟମ ପନ୍ଥାରେ ଚଳିବା ଦରକାର, ତାହା ହିଁ ଶୁଭପ୍ରଦ । ସେତକ କରିପାରିଲେ ମନୁଷ୍ୟ ସତ୍ ପଥରେ ଚାଲିବାକୁ ସମର୍ଥ ହେବ ଓ ସତ୍ୟ ଉପଲବ୍ଧି କରିବ ।"

ଯେଉଁ ସତ୍ୟ ବୁଦ୍ଧଦେବ ପ୍ରଚାର କଲେ, ତାର ପ୍ରଥମ କଥା ହେଉଛି, ସଂସାର ଦୁଃଖ ଓ ଯନ୍ତ୍ରଣାରେ ପରିପୂର୍ଣ୍ଣ । ଦ୍ୱିତୀୟ ହେଉଛି, ଏହି ଦୁଃଖ ଯନ୍ତ୍ରଣାର କିଛି ନା କିଛି କାରଣ ରହିଛି । ଏହି ଦୁଃଖ ଯନ୍ତ୍ରଣାରୁ ରକ୍ଷା ପାଇବାକୁ ହେଲେ ସେହି ମୂଳ କାରଣକୁ ମନରୁ ଦୂର କରିବାକୁ

Digitized by srujanika@gmail.com

ହେବ । କେବଳ ଆଠ ଗୋଟି ସତ୍ୟ ଅନୁସରଣ କରି ଚାଲିଲେ ଏହା ସମ୍ଭବ ହୋଇ ପାରିବ । ଏହା ହିଁ ବୁଦ୍ଧଦେବଙ୍କ ଚାରି ମହତ୍ ପଥ ରୂପେ ପ୍ରତିପାଦିତ ହୋଇ ଆସିଛି ।

ସେହି ଆଠ ସତ୍ୟ ବା ଅଷ୍ଟାଙ୍ଗ ହେଲା—ସତ୍ ମତ ପ୍ରକାଶ, ସତ୍ ଆକାଂକ୍ଷା ପୋଷଣ, ସତ୍ ବାକ୍ୟ କଥନ, ସତ୍ ବ୍ୟବହାର, ସତ୍‌ରେ ଜୀବିକା ନିର୍ବାହ, ସତ୍ ଉଦ୍ୟମ, ସତ୍ ଭାବନା ଓ ସତ୍ ଚିନ୍ତା । ବୁଦ୍ଧଦେବଙ୍କ ମତରେ ଏହା ହିଁ ଧର୍ମ, ଏହା ହିଁ ପୁଣ୍ୟ । ବୁଦ୍ଧଦେବ ପ୍ରଚାର କଲେ, ମାନବ ଜାତି ଏହି ପଥ ଅନୁସରଣ କଲେ ସବୁ ବାଧା ଓ ଅଶାନ୍ତିରୁ ମୁକ୍ତ ହେବ ।

ସାରନାଥଠାରେ ବୁଦ୍ଧ ଯେଉଁ ସତ୍ୟ ପ୍ରଚାର କଲେ, ତାହା ଆରମ୍ଭ ମାତ୍ର । ତା' ପରେ ଜୀବନଯାକ ସେ ସମଗ୍ର ଦେଶ ଭ୍ରମଣ କରି



ସାଧନାରେ ଲାଭ କରିଥିବା ସତ୍ୟ, ପୁଣ୍ୟର ପଥ ଲୋକମାନଙ୍କୁ ବୁଝାଇବାକୁ ଲାଗିଲେ । ସେ ଯୁଗରେ ପଣ୍ଡିତ ଓ ଧର୍ମପ୍ରାଣ ଲୋକମାନଙ୍କର ଭାଷା ଥିଲା ସଂସ୍କୃତ । ମାତ୍ର ବୁଦ୍ଧଦେବ ତାଙ୍କ ସତ୍ୟ ପ୍ରଚାର କଲେ ସାଧାରଣ କଥିତ ପାଲି ଭାଷାରେ । ଲୋକମାନେ ଏହା ସହଜରେ ବୁଝି ପାରିଲେ ଓ ଏହି ସତ୍ୟ ପ୍ରତି ଆକୃଷ୍ଟ ହେଲେ ।

Digitized by srujanika@gmail.com

ବୁଦ୍ଧଦେବଙ୍କ ଉପଦେଶ ଥିଲା ଅତି ସରଳ ଏବଂ ଲୋକମାନେ ତାହା ସହଜରେ ହୃଦୟଙ୍ଗମ କରି ପାରୁଥିଲେ । ବୁଦ୍ଧଦେବ କର୍ମଯୋଗରେ ବିଶ୍ୱାସ କରୁଥିଲେ । ସେ କହୁଥିଲେ, ମନୁଷ୍ୟର ଆତ୍ମା ଅମର । ମୃତ୍ୟୁ ପରେ ସେ ଆତ୍ମା ପୁଣି ଏ ସଂସାରରେ ଜନ୍ମଗ୍ରହଣ କରିବ । ପ୍ରତି ଜନ୍ମରେ ତାକୁ ପୂର୍ବ ଜନ୍ମର କର୍ମଫଳ ଭୋଗ କରିବାକୁ ପଡ଼ିବ ।

ଜୀବନର ଅନ୍ତିମ ପରିଣତି ହେଲା ନିର୍ବାଣ ପ୍ରାପ୍ତି । ଏହା ଫଳରେ ଆତ୍ମା ଜନ୍ମ ଓ ପୁନର୍ଜନ୍ମରୁ ରକ୍ଷାପାଏ । ଏହା କେବଳ ସତ୍ ପଥରେ ଓ ପୁଣ୍ୟ କର୍ମରେ ଜୀବନ କଟାଇଲେ ସମ୍ଭବ ହୋଇଥାଏ ।

ବୁଦ୍ଧଦେବ ଅହିଂସାର ପ୍ରଧାନ ପ୍ରବର୍ତ୍ତକ ଥିଲେ । ସେ ଘୋଷଣା କରିଥିଲେ, ପ୍ରତ୍ୟେକ ଜୀବନ ଅତି ପବିତ୍ର । କାହାରିକୁ ହତ୍ୟା ନ କରିବା ପାଇଁ ସେ ଶିଷ୍ୟମାନଙ୍କୁ ଉପଦେଶ ଦେଉଥିଲେ । ମନ, ବାକ୍ୟ ବା କାର୍ଯ୍ୟରେ କୌଣସି ପ୍ରକାରେ ହେଲେ ହିଂସା ଓ କ୍ରୋଧ ନ କରିବା ହିଁ ତାଙ୍କର ପ୍ରଧାନ ନୀତି ଥିଲା ।

ମନୁଷ୍ୟ ପାଇଁ ବୁଦ୍ଧଦେବଙ୍କର ପ୍ରଥମ ଉପଦେଶ ଜୀବନକୁ ଶୃଙ୍ଖଳା-ବଦ୍ଧ କରିବା । ନିଜକୁ ଶୃଙ୍ଖଳିତ ନ କଲେ ଧର୍ମ ଜୀବନ କଟାଇବା ଆଦୌ ସମ୍ଭବ ନୁହେଁ । ତାଙ୍କର ଉପଦେଶ ହେଲା, "ନିର୍ଦ୍ଦିଷ୍ଟ ସମୟରେ ଯାହାର ନିଦ୍ରାଭଙ୍ଗ ନ ହୁଏ, ବଳବାନ୍ ଯୁବକ ହୋଇ ମଧ୍ୟ ଯେ ଶିଥିଳ, ଯାହାର ଚିନ୍ତା ଓ ଭାବନା ଦୁର୍ବଳ—ସେହି ଆଳସ୍ୟ ପରାୟଣ ବ୍ୟକ୍ତି କେବେ ହେଲେ ଜ୍ଞାନର ଅଧିକାରୀ ହୋଇ ନ ପାରେ ।

ବୁଦ୍ଧଦେବଙ୍କ ମତରେ ଦୟା ହିଁ ସର୍ବଶ୍ରେଷ୍ଠ ଧର୍ମ । ପିଲା ଥିଲାବେଳେ ଗୋଟିଏ ଆହତ ପକ୍ଷୀର ବ୍ୟାକୁଳତା ତାଙ୍କ ମନକୁ ବିଚଳିତ କରି ପକାଇଥିଲା । ସେ କହୁଥିଲେ, ମା' ଯେପରି ତାର ଏକମାତ୍ର ପୁତ୍ର ସନ୍ତାନର ଯତ୍ନ ନିଏ, ମନୁଷ୍ୟ ପ୍ରତ୍ୟେକ ଜୀବନ୍ତ ପ୍ରାଣୀ ପ୍ରତି ସେହିପରି ଶ୍ରଦ୍ଧା ଓ ଯତ୍ନ ପ୍ରଦର୍ଶନ କରିବା ଉଚିତ ।

ସ୍ନେହ ସବୁଠାରେ ଜୟଲାଭ କରେ । ହିଂସାକୁ ଅହିଂସା ବଳରେ ପରାଜିତ କରା ଯାଇପାରେ । ଘୃଣାକୁ ପ୍ରେମରେ ବଶୀଭୂତ କରାଯାଏ । ଏ ଦୁନିଆରେ ଘୃଣାକୁ କେବେ ହେଲେ ଘୃଣାରେ ଦୂର କରାଯାଇ ପାରିବ ନାହିଁ—ତାହା ଦୂର ହେବ କେବଳ ସୁଖ ପାଇବାରେ ।

Digitized by srujanika@gmail.com

# ସଙ୍ଘ

ପୂର୍ବର ପାଞ୍ଚ ଜଣ ଅନୁଗାମୀ ବୁଦ୍ଧଦେବଙ୍କ ଉପଦେଶ ମାନି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେମାନେ ହେଲେ ସନ୍ନ୍ୟାସୀ ବା ଭିକ୍ଷୁ । କାରଣ ବୁଦ୍ଧଦେବଙ୍କ ଶିଷ୍ୟମାନଙ୍କୁ ଭିକ୍ଷୁ ଆଖ୍ୟା ଦିଆଗଲା । ସେହିମାନଙ୍କୁ ନେଇ ଗଢ଼ାଗଲା ସଙ୍ଘ । କ୍ରମେ ବୁଦ୍ଧଦେବଙ୍କ ଯଶର ପରିବ୍ୟାପ୍ତ ହେବାରୁ ବହୁ ଶିଷ୍ୟ ଆସି ଏହି ସଙ୍ଘରେ ଯୋଗଦେଲେ

Digitized by srujanika@gmail.com

ସେ ସମୟରେ ବାରଣସୀରେ ଜଣେ ଧନୀ ଯୁବକ ବାସ କରୁଥିଲେ-ନାମ 'ଯଶ'। ଯଶ ଘର ସଂସାର ଉପରେ ବଡ ଅସନ୍ତୁଷ୍ଟ ହୋଇ ଉଠି-ଥିଲେ। ଦିନେ ଘର ତ୍ୟାଗ କରି ଲକ୍ଷହୀନ ଭାବରେ ଚାଲିଗଲେ। ସୌଭାଗ୍ୟକ୍ରମେ ସେ ବୁଦ୍ଧଦେବଙ୍କ ସାକ୍ଷାତ ପାଇଲେ। ତାଙ୍କ ସ୍ୱର୍ଗୀୟ ଆଭାରେ ମୁଗ୍ଧ ହୋଇ ଶରଣ ପଶିଲେ। ସତ୍‌ପଥ ଅନୁସରଣ କରିବାକୁ ବୁଦ୍ଧ ତାଙ୍କୁ ଉପଦେଶ ଦେଲେ। ଯଶ ସନ୍ନ୍ୟାସ ବ୍ରତ ଗ୍ରହଣ କରି ଭିକ୍ଷୁ ସଂଘରେ ଯୋଗ ଦେଲେ।

ସ୍ନେହର ପୁତ୍ରଙ୍କୁ ଖୋଜି ଖୋଜି ଯଶଙ୍କ ପିତା ବୁଦ୍ଧଦେବଙ୍କ ପାଖରେ ପହଞ୍ଚିଲେ। ସେ ମଧ୍ୟ ଶିଷ୍ୟତ୍ୱ ଗ୍ରହଣ କଲେ। ମାତ୍ର ସେ ନିଜ ଘର ଓ ପରିବାର ଛାଡ଼ି ପାରିଲେ ନାହିଁ; ଜଣେ ଗୃହୀ ଶିଷ୍ୟ ରୂପେ ଗୃହୀତ ହେଲେ। ପରେ ବୁଦ୍ଧଦେବ ଯଶଙ୍କ ଘରକୁ ଯାଇଥିଲେ ଏବଂ ତାଙ୍କ ମା' ଓ ସହଧର୍ମିଣୀଙ୍କୁ ଏହି ପବିତ୍ର ଧର୍ମରେ ଦୀକ୍ଷିତ କରାଇ ଥିଲେ। ସେ ଦୁହେଁ ବୁଦ୍ଧଦେବଙ୍କର ପ୍ରଥମ ଶିଷ୍ୟା।

ସମସ୍ତ ଶିଷ୍ୟ, ଶିଷ୍ୟା-ଭିକ୍ଷୁ ସନ୍ନ୍ୟାସୀ ବା ସନ୍ନ୍ୟାସିନୀ ହୁଅନ୍ତୁ, ଏହା ବୁଦ୍ଧଦେବ ଚାହୁଁ ନ ଥିଲେ। ସେ ବିଶ୍ୱାସ କରୁଥିଲେ, ସମସ୍ତେ ଯେ ଗୃହ ସଂସାର ତ୍ୟାଗ କରି ସନ୍ନ୍ୟାସ ଜୀବନ କଟାଇବେ, ଏହା ସମ୍ଭବ ନୁହେଁ। ଅଧିକାଂଶ ଘର ସଂସାରରେ ବାନ୍ଧି ହୋଇ ସାଧାରଣ ଜୀବନ ଯାପନ କରନ୍ତୁ; ମାତ୍ର ସତ୍ୟ ଓ ନ୍ୟାୟ ପଥରେ ଚଳନ୍ତୁ—ଏହି ଶିକ୍ଷା ସେ ଦେଉଥିଲେ। ଏହିପରି ଯେଉଁମାନେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ, ସେମା[illegible] ହେଲେ ଗୃହୀ ଭକ୍ତ। ସଂଘ, ବୁଦ୍ଧ ଏବଂ ଧମ୍ମ (ଧର୍ମ-ଶିକ୍ଷା) ସେମାନଙ୍କର [illegible] ହେଲେ।

● ସଂଘର ଉନ୍ନତି ଓ ଦୃଢ଼ତା ପାଇଁ ବୁଦ୍ଧଦେବ ବଡ ଯତ୍ନଶୀଳ ହୋଇଥିଲେ। ତାଙ୍କ ଦ୍ୱାରା ଦୀକ୍ଷିତ ଦଳେ [illegible] ଶିଷ୍ୟ ଯେପରି ମାନବ ସମାଜର ମଙ୍ଗଳ ପାଇଁ ନିଷ୍ଠାର ସହିତ କାମ କରିବେ, ସେହି-ପରି ଭାବରେ ସେ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ ଓ ସେହି ଆଦର୍ଶରେ ତାଲିମ କରୁଥିଲେ।

ବୁଦ୍ଧ ବହୁ ସାଧକଙ୍କ ସହିତ ସାକ୍ଷାତ କରି ସେମାନଙ୍କୁ ନିଜ ପ୍ରବର୍ତ୍ତିତ ମଧ୍ୟମ ପନ୍ଥାରେ ଦୀକ୍ଷିତ କରାଉଥିଲେ। ତାଙ୍କର ଦୀକ୍ଷାପ୍ରାପ୍ତ ଶିଷ୍ୟମାନଙ୍କ ମଧ୍ୟରେ ଜଣେ ଅଗ୍ନି ପୂଜକ ବ୍ରାହ୍ମଣ ପୁରୋହିତ ଥିଲେ। ତାଙ୍କ ନାମ

Digitized by srujanika@gmail.com

କାଶ୍ୟପ । ପରେ ମହାକାଶ୍ୟପ ନାମରେ ସେ ପ୍ରସିଦ୍ଧି ଲାଭ କରିଥିଲେ । ସେ ସଂଘର ସର୍ବୋଚ୍ଚ ପରିଚାଳକ ହୋଇପାରି ଥିଲେ ।

କାଶ୍ୟପଙ୍କ ସହ ତାଙ୍କର ପାଞ୍ଚ ଶତ ଅନୁଗତ ସଂଘରେ ଯୋଗ ଦେଇଥିଲେ । ତାହା ପରେ କାଶ୍ୟପଙ୍କ ଦୁଇ ଭାଇ ସେମାନଙ୍କ ତିନି ଶତ ଓ ଦୁଇ ଶତ ଶିଷ୍ୟଙ୍କ ଗହଣରେ ମଧ୍ୟ ସଂଘ ଧର୍ମରେ ଦୀକ୍ଷିତ ହେଲେ । ସଂଘର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଧର୍ମପ୍ରଚାରକ ହିସାବରେ ବୁଦ୍ଧଦେବଙ୍କର ଖ୍ୟାତି ସାରା ଦେଶରେ ବିଚ୍ଛୁରିତ ହୋଇ ପଡ଼ିଲା ।

ବୁଦ୍ଧଦେବ ଶିଷ୍ୟ ଓ ଭିକ୍ଷୁଙ୍କ ଗହଣରେ ମଗଧର ରାଜଧାନୀ ରାଜଗୃହକୁ ଯାଇଥିଲେ । ବିମ୍ବିସାର ସେତେବେଳେ ମଗଧର ରାଜା । ବୁଦ୍ଧଦେବଙ୍କ ଆଗମନ କଥା ଶୁଣି ନିଜେ ରାଜା ତାଙ୍କୁ ପାଛୋଟି ନେବାର ବ୍ୟବସ୍ଥା କଲେ । ପାତ୍ର ମନ୍ତ୍ରୀଙ୍କ ସହ ଆସି ଧର୍ମାତ୍ମା ବୁଦ୍ଧଦେବଙ୍କୁ ସମ୍ମାନର ସହ ଭେଟିଲେ ।

ବୁଦ୍ଧଦେବ ଆନନ୍ଦର ସହିତ ସେମାନଙ୍କୁ ସାକ୍ଷାତ ଦେଇ ସତ୍ୟ ଓ ନ୍ୟାୟ ପଥରେ ଚଳିବା ପାଇଁ ଉପଦେଶ ଦେଇଥିଲେ । ରାଜା ଏବଂ ତାଙ୍କ ପାଖ ଲୋକମାନେ ବୌଦ୍ଧଧର୍ମ ଗ୍ରହଣ କଲେ । ରାଜା ବିମ୍ବିସାର ବୁଦ୍ଧଦେବଙ୍କ ଉପଦେଶରେ ଏତେ ବିହ୍ୱଳ ହୋଇଗଲେ ଯେ, ଘୋଷଣା କରିଥିଲେ, "ମୁଁ ବର୍ତ୍ତମାନ ସବୁ ପ୍ରକାର ସ୍ୱର୍ଗୀୟ ଆଶୀର୍ବାଦ ପାଇଗଲି । ଏହା ମୋ ରାଜସିଂହାସନଠାରୁ ମଧ୍ୟ ମୋ ପ୍ରତି ଅଧିକ ମୂଲ୍ୟବାନ୍ ।"

ସେ ବୁଦ୍ଧଦେବଙ୍କ ପାଖରେ ଆବେଦନ କଲେ, "ହେ ମହାତ୍ମା, ଆପଣ ଯଦି ଆପଣଙ୍କ ଭିକ୍ଷୁମାନଙ୍କ ସହିତ ମୋ ଘରେ ଦିନେ ଅତିଥି ହୁଅନ୍ତେ, ତେବେ ତାକୁ ମୁଁ ଜୀବନର ପରମ ଭାଗ୍ୟ ବୋଲି ମନେ କରନ୍ତି ।" ବୁଦ୍ଧଦେବ ଏଥିରେ ସମ୍ମତି ପ୍ରଦାନ କଲେ ।

ରାଜା ବିମ୍ବିସାର ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପାଇଁ ବ୍ୟାପକ ଆୟୋଜନ କଲେ । ବୁଦ୍ଧଦେବ ଭିକ୍ଷୁମାନଙ୍କ ଗହଣରେ ଯେଉଁ ବାଟ ଦେଇ ଆସିବେ, ସେ ବାଟରେ ପତ୍ରପୁଷ୍ପ ଶୋଭିତ ତୋରଣମାନ ନିର୍ମାଣ କରାଇଲେ । ନିଜେ ଉଆସ ଉପରୁ ଓହ୍ଲାଇ ଆସି ଦ୍ୱାର ମୁହଁ ପାଖରୁ ଭକ୍ତିର ସହିତ ସେମାନଙ୍କୁ ପାଛୋଟି ନେଲେ । ଗୋଟିଏ ସୁସଜ୍ଜିତ ଗୃହ ମଧ୍ୟରେ ଏହି ସମ୍ମାନିତ ଅତିଥିମାନେ ବିଶ୍ରାମ ନେବାର ବ୍ୟବସ୍ଥା

Digitized by srujanika@gmail.com

କରାଗଲା । ବୁଦ୍ଧଦେବଙ୍କୁ ଗୋଟିଏ ଉଚ୍ଚ ଆସନ ପ୍ରଦାନ କରାଗଲା । ରାଜା ସେମାନଙ୍କୁ ଖାଦ୍ୟଦ୍ରବ୍ୟ ନିଜେ ପରଷିଲେ ।

ଭୋଜନ ପରେ ରାଜା ପ୍ରାର୍ଥନା କଲେ, "ଏହି ପବିତ୍ର ଦିବସକୁ ସ୍ମରଣୀୟ କରି ରଖିବା ପାଇଁ ମୋର 'ବେଳୁବନ' ଉଦ୍ୟାନଟିକୁ ସନ୍ନ୍ୟାସୀମାନଙ୍କ ରହିବା ଲାଗି ମୁଁ ଦାନ ଦେବାକୁ ଚାହେଁ । ମୋର ଅନୁରୋଧ, ଏହା ଗ୍ରହଣ କରାଯାଉ ।"

ବୁଦ୍ଧଦେବ ତାହା ଗ୍ରହଣ କରିବାକୁ ସମ୍ମତି ଦେଲେ । ନଗରର



ଉପକଣ୍ଠରେ ଅବସ୍ଥିତ ଏହି ବେଳୁବନ ଉଦ୍ୟାନରେ ସେ ତାଙ୍କର ପ୍ରଥମ ବିହାର ବା ମଠ ସ୍ଥାପନ କଲେ । ସେଠାରେ ସନ୍ନ୍ୟାସୀମାନେ ରହି ଶିକ୍ଷାଲାଭ ଓ ଧ୍ୟାନ କରିବାର ବ୍ୟବସ୍ଥା କରାଗଲା ।

ସେ ସମୟରେ ରୀତି ଥିଲା, ଯେକୌଣସି ମତବାଦର ପରିବ୍ରାଜକ ସାଧୁ ହୁଅନ୍ତୁ ନା କାହିଁକି ବର୍ଷା ଚାରି ମାସ ସେମାନେ ଦେଶ ବିଦେଶ ଭ୍ରମଣ ନ କରି ଗୋଟିଏ ସ୍ଥାନରେ ବିଶ୍ରାମ ନେଉଥିଲେ । ଏହାକୁ

Digitized by srujanika@gmail.com

ଚାତୁର୍ମାସ୍ୟ ବ୍ରତ ବୋଲି କୁହା ଯାଉଥିଲା । ଏହି ସମୟଟା ସେମାନେ କୌଣସି ଆଶ୍ରମ ବା ମନ୍ଦିରରେ କଟାଉଥିଲେ । ବୌଦ୍ଧଭିକ୍ଷୁମାନେ ମଧ୍ୟ ଏହିପରି ବିହାରରେ ସେମାନଙ୍କ ଚାତୁର୍ମାସ୍ୟ ବ୍ରତ ପାଳନ କରିବାର ବ୍ୟବସ୍ଥା କରାଗଲା ।

ରାଜଗୃହରେ ଅବସ୍ଥାନ କାଳରେ ବୁଦ୍ଧଦେବ ସାରିପୁତ୍ର ଓ ମୋଗଲାୟନ ନାମକ ଦୁଇ ଜଣ ପ୍ରସିଦ୍ଧ ସନ୍ନ୍ୟାସୀଙ୍କୁ ନିଜ ମତରେ ଦୀକ୍ଷିତ କରାଇଥିଲେ । ସେ ଦୁହେଁ ପରେ ସଂଘର ପ୍ରସିଦ୍ଧ ପରିଚାଳକ ହୋଇ-



ଥିଲେ । ବୁଦ୍ଧଦେବଙ୍କଠାରୁ ଦୀକ୍ଷା ଗ୍ରହଣ ପୂର୍ବରୁ ସାରିପୁତ୍ର ଓ ମୋଗଲାୟନ ଗୃହ ସଂସାର ଛାଡ଼ି ସନ୍ନ୍ୟାସୀ ହୋଇଥିଲେ ଅତି ପିଲା ଦିନୁ ସେ ଦୁହେଁ ଘନିଷ୍ଠ ବନ୍ଧୁ ଥିଲେ । ଘରର ବନ୍ଧନ ସେମାନଙ୍କୁ ଶାନ୍ତି ଦେଇ ପାରିଲା ନାହିଁ । କେଉଁଠି ଶାନ୍ତି ପାଇବେ, ସତ୍ୟର ସନ୍ଧାନ କେଉଁଠାରେ ମିଳିବ, ତାହା ଜାଣିବା ପାଇଁ ଘର ସଂସାର ଛାଡ଼ି ବଣ ଜଙ୍ଗଲରେ ବୁଲୁଥିଲେ । କଥା ହୋଇଥିଲା, ସେମାନଙ୍କ ମଧ୍ୟରୁ ଯେ ଆଗ

Digitized by srujanika@gmail.com

ସତ୍ୟର ସନ୍ଧାନ ପାଇବ, ଅନ୍ୟକୁ ଜଣାଇବ ।

ଦିନେ ସାରିପୁତ୍ର ଲକ୍ଷ୍ୟହୀନ ଭାବରେ ବୁଲୁ ବୁଲୁ 'ଆଶାଜୀ'ଙ୍କର ଦେଖା ପାଇଲେ । ପ୍ରଥମେ ଯେଉଁ ପାଞ୍ଚ ଜଣ ବୁଦ୍ଧଦେବଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ, ଆଶାଜୀ ସେମାନଙ୍କ ମଧ୍ୟରୁ ଜଣେ ।

ସାରିପୁତ୍ର ତାଙ୍କ ଆଚରଣ ଦେଖି, କଥା ଶୁଣି ମୁଗ୍‌ଧ ହୋଇଗଲେ । ପଚାରିଲେ, "ଆପଣଙ୍କ ଗୁରୁ କିଏ ? କେଉଁ ଧର୍ମ ଅନୁସାରେ ଆପଣ ଜୀବନ ବିତାଉଛନ୍ତି ?"

"ମୁଁ ଶାକ୍ୟମୁନିଙ୍କ ଧର୍ମ ମାନି ଚଳୁଅଛି ।" ଆଶାଜୀ ଉତ୍ତର ଦେଲେ ।

"ତାଙ୍କ ଶିକ୍ଷା କଅଣ ?"

ଶାକ୍ୟମୁନି ବୁଦ୍ଧଦେବ ଯେଉଁ ସତ୍ୟ ପ୍ରଚାର କରୁଛନ୍ତି, ତାହା ଆଶାଜୀ ବୁଝାଇ ଦେଲେ ।

"ଏହି ସତ୍ୟର ଅନୁସନ୍ଧାନ ହିଁ ମୁଁ କରୁଥିଲି ।"—ସାରିପୁତ୍ର ଗଦ୍‌ଗଦ ଚିତ୍ତରେ କହିଲେ ।

ବନ୍ଧୁ ମୋଗଲ୍ଲାୟନଙ୍କୁ ଏହି ବାର୍ତ୍ତା ଦେବା ପାଇଁ ସେ ବ୍ୟଗ୍ର ହୋଇ ପଡ଼ିଲେ ।

ଦୁଇ ବନ୍ଧୁ ବୁଦ୍ଧଦେବଙ୍କ ପାଖକୁ ଗଲେ ଏବଂ ଦୀକ୍ଷା ଗ୍ରହଣ କରି ସଙ୍ଘରେ ଯୋଗ ଦେଲେ ।



Digitized by srujanika@gmail.com

# ଗୃହକୁ ଆଗମନ

କେତେ ବର୍ଷ ପରେ ବୁଦ୍ଧଦେବଙ୍କ ଖ୍ୟାତି ପିତାଙ୍କ କର୍ଣ୍ଣଗୋଚର ହେଲା । ପୁତ୍ର ସନ୍ନ୍ୟାସୀ ହୋଇଯିବାରେ ପିତା ସେ ପର୍ଯ୍ୟନ୍ତ ମଧ୍ୟ ଦୁଃଖିତ ଓ ଚିନ୍ତିତ ଥିଲେ । ସାମାନ୍ୟ କେତେ ଦିନ ପାଇଁ ହେଲେ ମଧ୍ୟ ସେ କପିଳବାସ୍ତୁ ଫେରି ଆସନ୍ତୁ, ଏହା ହିଁ ରାଜା କାମନା କରୁଥିଲେ । ବୋଧହୁଏ ସେ ଆଶା କରୁଥିଲେ, ତାଙ୍କର ଏକମାତ୍ର ବଂଶଧର ଘରକୁ ଫେରି ଆସିବେ ଏବଂ ଶାକ୍ୟ ବଂଶର ଯଥାଯୋଗ୍ୟ ଆସନର ଅଧିକାରୀ ହେବେ ।

Digitized by srujanika@gmail.com

ବୁଦ୍ଧଦେବ ରାଜଗୃହରେ ଅବସ୍ଥାନ କରି ଧର୍ମ ପ୍ରଚାରରେ ରତ ଅଛନ୍ତି, ଏହି ସମ୍ବାଦ ପାଇବା କ୍ଷଣି ଏକ ସହସ୍ର ଲୋକଙ୍କ ଗହଣରେ ତାଙ୍କର ଜଣେ ବିଶ୍ୱସ୍ତ ମନ୍ତ୍ରୀଙ୍କୁ ସେ ରାଜଗୃହ ପଠାଇଲେ । ଉଦ୍ଦେଶ୍ୟ, ବୁଦ୍ଧଦେବଙ୍କୁ କପିଳବାସ୍ତୁ ଆସିବା ପାଇଁ ନିମନ୍ତ୍ରଣ କରିବା ।

ବହୁ ସଂଖ୍ୟକ ଲୋକଙ୍କ ଗହଣରେ ବସି ବୁଦ୍ଧଦେବ ନିଜର ଆଦର୍ଶ ବ୍ୟାଖ୍ୟା କରୁଥିବା ବେଳେ ମନ୍ତ୍ରୀ ଓ କପିଳବାସ୍ତୁର ପ୍ରଜା ସେଠାରେ ପହଞ୍ଚିଲେ । ସେମାନେ ସେହି ବାଣୀ ଶୁଣିବା ପାଇଁ ଜନତା ମଧ୍ୟରେ ଯୋଗ ଦେଲେ ।

ସେମାନେ ବୁଦ୍ଧଦେବଙ୍କ ଉପଦେଶରେ ଏତେ ବେଶି ମୋହିତ ହୋଇଗଲେ ଯେ ସଙ୍ଗେ ସଙ୍ଗେ ତାଙ୍କ ଦୀକ୍ଷାରେ ଦୀକ୍ଷିତ ହୋଇଗଲେ । ସେମାନେ ଘର ସଂସାର ମାୟା ତୁଟାଇ ଭିକ୍ଷୁ ହୋଇଗଲେ । ଦୁନିଆ କଥା ଏକାବେଳକେ ଭୁଲି ଯିବାରୁ, ଯେଉଁ ଉଦ୍ଦେଶ୍ୟରେ ଆସିଥିଲେ, ତାହା ଆଉ ସ୍ମରଣରେ ରହିଲା ନାହିଁ । କପିଳବାସ୍ତୁର ନିମନ୍ତ୍ରଣ ବୁଦ୍ଧଦେବ ଜାଣି ପାରିଲେ ନାହିଁ ।

ତତ୍ପରେ ଶୁଦ୍ଧୋଦନ କାଲୁଦୟିନିଙ୍କୁ ବୁଦ୍ଧଦେବଙ୍କ ପାଖକୁ ପଠାଇଲେ । ସେ ସିଦ୍ଧାର୍ଥଙ୍କର ପିଲା ଦିନର ସାଙ୍ଗ ଓ ଖେଳ ସାଥୀ । ସେ ମଧ୍ୟ ବୁଦ୍ଧଦେବଙ୍କ ବାଣୀ ଶୁଣି ଭିକ୍ଷୁ ହୋଇଗଲେ । ମାତ୍ର ଯେଉଁ ଉଦ୍ଦେଶ୍ୟରେ ଆସିଛନ୍ତି, ତାହା ଭୁଲିଯାଇ ନ ଥିଲେ ।

ଦିନେ ବୁଦ୍ଧଦେବ ଉଦ୍ୟାନରେ ବିଶ୍ରାମ ନେଉଥିବା ସମୟରେ କାଲୁଦୟିନି ପାଖକୁ ଯାଇ ଧୀର ସ୍ୱରରେ କହିଲେ, "ଗୁରୁଦେବ, ତୁମ ପିତା, ମାଉସୀ ପ୍ରଜାପତି ଓ ସହଧର୍ମିଣୀ ଯଶୋଧାରା ତୁମ ଦର୍ଶନ ପାଇଁ ବ୍ୟାକୁଳ । ତୁମକୁ ବରଣ କରି ନେବା ପାଇଁ ରାଜା ଖାସ ମୋତେ ପଠାଇ ଅଛନ୍ତି ।"

ବୁଦ୍ଧଦେବଙ୍କର ପୂର୍ବ ଦିନର କଥା ସବୁ ମନରେ ଖେଳିଗଲା । ସେମାନଙ୍କୁ ଦେଖିବାକୁ ଇଚ୍ଛା ହେଲା । ଆଉ ମଧ୍ୟ ଭାବିଲେ, ଏହି ନୂତନ ସତ୍ୟ ଓ ନ୍ୟାୟ ପଥରେ ସେମାନଙ୍କୁ ଦୀକ୍ଷିତ କରିବାକୁ ହେବ ।

ସେ କପିଳବାସ୍ତୁ ଯାତ୍ରା କଲେ । କାଲୁଦୟିନି ଶୁଦ୍ଧୋଦନଙ୍କୁ ଏହି ସମ୍ବାଦ ଦେବା ଲାଗି ଆଗରୁ ଚାଲିଗଲେ ।

Digitized by srujanika@gmail.com

ରାଜା ଶୁଦ୍ଧୋଦନ ମନ୍ତ୍ରୀ ଓ ପାଖ ଲୋକ ଗହଣରେ ନିଜ ପୁତ୍ରଙ୍କୁ ପାଛୋଟି ନେବା ପାଇଁ ପ୍ରାସାଦରୁ ବାହାରି ଆସିଲେ । ଯେତେବେଳେ ବୁଦ୍ଧଦେବଙ୍କ ଦର୍ଶନ ପାଇଲେ, ସେତେବେଳେ ଦେଖି ପାରିଲେ, ତାଙ୍କ ମୁଖମଣ୍ଡଳର ଚତୁର୍ଦ୍ଦିଗରେ ଗୋଟିଏ ଜ୍ୟୋତିର ବଳୟ । ସେ ପୁତ୍ରଙ୍କୁ କୋଳରେ ଭିଡି ଧରି କହିଲେ, "ମୋ ମନରେ ଆଉ କୌଣସି ଦୁଃଖ ନାହିଁ । ତୁମେ ସମଗ୍ର ମାନବ ସମାଜର ମଙ୍ଗଳ ପାଇଁ ସତ୍‌ପଥ ଲାଭ କରିଅଛ ।"

ସନ୍ନ୍ୟାସ ବ୍ରତ ଗ୍ରହଣ କରି ଥିବାରୁ ବୁଦ୍ଧଦେବ ଓ ତାଙ୍କ ଶିଷ୍ୟ ଭକ୍ତମାନେ ରାଜପ୍ରସାଦରେ ରହିଲେ ନାହିଁ । ସହର ଉପକଣ୍ଠ 'ନିଗ୍ରୋଧ' ଉପବନରେ ସେମାନେ ରହିବାର ବ୍ୟବସ୍ଥା ରାଜା ଶୁଦ୍ଧୋଦନ କରିଦେଲେ ।

ବୁଦ୍ଧଦେବଙ୍କ ଦର୍ଶନ ପାଇଁ ବହୁ ଲୋକ ପ୍ରତ୍ୟହ ନିଗ୍ରୋଧ ଉଦ୍ୟାନକୁ ଆସିବାକୁ ଲାଗିଲେ । ପ୍ରଥମେ ପ୍ରଥମେ ଶାକ୍ୟ ଜାତିର ଉଚ୍ଚପଦସ୍ଥ ଲୋକମାନେ ତାଙ୍କ ପାଖକୁ ଆସିବାକୁ ଇଚ୍ଛୁ ନ ଥିଲେ । ସେମାନେ କହୁଥିଲେ, ବୁଦ୍ଧଦେବ ଘର ସଂସାର ଛାଡି ବାହାରେ ବୁଲି ଭିକ୍ଷାବୃତ୍ତି ଧରିଛନ୍ତି । ଏହା ଦ୍ୱାରା ସେ ଶାକ୍ୟ ଜାତିର ସମ୍ମାନ କ୍ଷୁନ୍ନ କରିଛନ୍ତି । ମାତ୍ର ଯେତେବେଳେ ସେମାନେ ଶେଷରେ ଆସି ବୁଦ୍ଧଦେବଙ୍କୁ ଦର୍ଶନ କଲେ ଓ ତାଙ୍କ କଥା ଶୁଣିଲେ, ସେତେବେଳେ ସେମାନେ ମଧ୍ୟ ଘର ସଂସାର ତ୍ୟାଗ କରି ତାଙ୍କର ଅନୁଗାମୀ ହେଲେ ।

ସନ୍ନ୍ୟାସ ବିଧାନ ଅନୁସାରେ ପରଦିନ ପ୍ରତ୍ୟୁଷରୁ ବୁଦ୍ଧଦେବ ଭିକ୍ଷୁ-ମାନଙ୍କ ଗହଣରେ ଥାଳ ଧରି ଭିକ୍ଷା କରିବାକୁ ବାହାରିଲେ । ଶୁଦ୍ଧୋଦନଙ୍କ ପାଖରେ ଏ ଖବର ପହଞ୍ଚିଲା । "କଅଣ ! ମୋ ପୁଅ କପିଳବାସ୍ତୁ ସହରରେ ଘର ଘର ବୁଲି ଭିକ୍ଷା ମାଗିବ !" ଅତି କୁଣ୍ଠାର ସହିତ କହି ଉଠିଲେ ।

ପୁଅଙ୍କ ପାଖକୁ ଧପାଳି ଆସି ପୁଛା କଲେ, "ତୁମେ ମୋତେ କାହିଁକି ଏପରି ଅପମାନିତ କରୁଅଛ ? ମୁଁ ତୁମକୁ ଓ ତୁମର ଏଇ ଭିକ୍ଷୁ ଦଳଙ୍କୁ ଭୂରି ଭୋଜନ ଦେବାକୁ ଅସମର୍ଥ ନୁହେଁ । ଘର ଘର ବୁଲି ଭିକ୍ଷା ମାଗିବାକୁ ଯାଅ ନାହିଁ । ଏହା ଆମ ସନ୍ନ୍ୟାସୀମାନଙ୍କର ରୀତି ।"

"ତା' କିପରି ହେବ ?" ଶୁଦ୍ଧୋଦନ ପଚାରିଲେ । "ତୁମେ ଜଣେ

Digitized by srujanika@gmail.com

ରାଜକୁମାର ।"

"ନା ।" ବୁଦ୍ଧଦେବଙ୍କ ଉତ୍ତର । "ମୁଁ ଜଣେ ସନ୍ନ୍ୟାସୀ । ସନ୍ନ୍ୟାସୀମାନଙ୍କର ଘର ସଂସାର ବା ବଂଶଗାରିମା ସହିତ କୌଣସି ସମ୍ପର୍କ ନ ଥାଏ ।"

ଆଉ କୌଣସି ଯୁକ୍ତି ନ କରି ଶୁଦ୍ଧୋଦନ ବୁଦ୍ଧଦେବ ଓ ତାଙ୍କ ଅନୁଚରମାନଙ୍କୁ ନିଜ ନଗରକୁ ବରଣ କରି ନେଇଗଲେ । ରାଜବଂଶର ସମସ୍ତ ଲୋକ ବୁଦ୍ଧଦେବଙ୍କୁ ପାଛୋଟି ନେବାକୁ ବାହାରି ଆସି... । ସେମାନଙ୍କ ଭିତରେ ତାଙ୍କର ମାଉସୀ ପ୍ରଜାପତି ଓ 'ଅନ୍ୟ ମହିଳାମାନେ ମଧ୍ୟ ଥିଲେ । ମାତ୍ର ଯଶୋଧାର ଆସିଲେ ନାହିଁ । ଆସିବାକୁ ମନା କରି ଦେଇ ସେ କହିଲେ, "ଯଦି ମୋର କୌଣସି ଆତ୍ମ ସମ୍ମାନ ଥାଏ, ତେବେ ସେ ମୋ ପାଖକୁ ଆସିବେ ।"

ଶୁଦ୍ଧୋଦନ ବୁଦ୍ଧଙ୍କୁ କହିଲେ, "ସାତ ବର୍ଷ ହେଲା ତୁମେ ସଂସାର ତ୍ୟାଗ କରି ଚାଲିଗଲଣି । ତୁମେ ଯିବା ଦିନଠାରୁ ଯଶୋଧାର ସବୁ ପ୍ରକାର ବିଳାସ ପରିତ୍ୟାଗ କରି ଅଛନ୍ତି । ସେ ତାଙ୍କ କେଶ କାଟି ଦେଇଛନ୍ତି ଓ ପୀତ ବସନ ପରିଧାନ କରୁ ଅଛନ୍ତି । ନଗରରେ ରହିଥିଲେ ମଧ୍ୟ ସେ ସନ୍ୟାସିନୀ ପରି ଜୀବନ ବିତାଉ ଅଛନ୍ତି ।"

ଏହା ଶୁଣିବା ମାତ୍ରକେ ବୁଦ୍ଧଦେବ ଯଶୋଧାରଙ୍କ ପାଖକୁ ଗଲେ । ଯଶୋଧାର ତାଙ୍କ ପାଦତଳେ ପଡ଼ି କାନ୍ଦିବାକୁ ଲାଗିଲେ । ବୁଦ୍ଧଦେବ ତାଙ୍କ ତ୍ୟାଗର ପ୍ରଶଂସା କରି ଆଶୀର୍ବାଦ କଲେ ।

ବୁଦ୍ଧଦେବଙ୍କ ପୁତ୍ର ରାହୁଳର ବୟସ ସେତେବେଳକୁ ସାତ ବର୍ଷ । ପିଲାଟିର ନିଜ ପିତାଙ୍କ ସମ୍ବନ୍ଧରେ କୌଣସି ଧାରଣା ନ ଥାଏ । ସେ ଭାବିଥିଲା ଯେ ଶୁଦ୍ଧୋଦନଙ୍କ ବ୍ୟତୀତ ତାର ଆଉ କେହି ପିତା ନାହାନ୍ତି । ବୁଦ୍ଧଦେବ କପିଳବାସ୍ତୁରେ ରହିବାର ସପ୍ତମ ଦିନ ଯଶୋଧାର ରାହୁଳକୁ ରାଜପୁତ୍ର ବେଶରେ ସଜାଇ ବୁଦ୍ଧଦେବଙ୍କ ପାଖକୁ ପଠାଇଲେ । ଶିଖାଇ ଦେଲେ, "ପିତାଙ୍କଠାରୁ ଉତ୍ତରାଧିକାର ଦାବୀ କରିବୁ ।"

ମାତାଙ୍କ ଶିକ୍ଷା ଅନୁସାରେ ରାହୁଳ ପିତାଙ୍କ ପାଖରେ ପହଞ୍ଚି ଉତ୍ତରାଧିକାର ଦାବୀ କଲା । ବୁଦ୍ଧଦେବ ସନ୍ତୁଷ୍ଟ ହେଲେ । ଶିଷ୍ୟ ସାରିପୁତ୍ରଙ୍କୁ ସେହି ନିର୍ଦ୍ଦେଶ ଦେଲେ, "ଏହାକୁ ଆମ ସଙ୍ଘରେ ଗ୍ରହଣ କରି ନିଅ ।"

Digitized by srujanika@gmail.com

# ବିଶ୍ୱ ଗୁରୁ

କପିଳବାସ୍ତୁରୁ ଫେରି ବୁଦ୍ଧଦେବ ନିଜର ସତ୍ୟଜ୍ଞାନ ପ୍ରଚାର ଉଦ୍ଦେଶ୍ୟରେ ନାନା ସ୍ଥାନ ବୁଲିବାକୁ ଲାଗିଲେ । ଯେଉଁଠାକୁ ଯାଉଥିଲେ, ସେଠାରେ ବିରାଟ ଜନତା ରୁଣ୍ଡ ହେଉଥିଲେ ତାଙ୍କ ଉପଦେଶ ଶୁଣିବା ପାଇଁ । ଉଚ୍ଚ ଓ ନୀଚ ଜାତିର ଲୋକେ ସମାନ ଭାବରେ ବୁଦ୍ଧଦେବଙ୍କ ସଙ୍ଘରେ ଆଶ୍ରୟ ଲାଭ କରୁଥିଲେ ।

Digitized by srujanika@gmail.com

ସେ ସମୟରେ କୋଶଳର ଶାସକ ଥିଲେ ବିପୁଳ ଶକ୍ତିଶାଳୀ ପ୍ରସେନଜିତ୍ । ସେ ପଶୁବଧ ଯଜ୍ଞର ଆୟୋଜନ କରିଥିଲେ । ବୁଦ୍ଧଦେବ ଏହା ଶୁଣି ପାରି ଯଜ୍ଞମଣ୍ଡପରେ ଯାଇ ପହଞ୍ଚିଲେ ଏବଂ ପଶୁ ହତ୍ୟା ନ କରିବାକୁ ଅନୁରୋଧ କଲେ । ବିନୟର ସହିତ କହିଲେ, ''ପଶୁରକ୍ତ ବିନ୍ଦୁଏ ପଡ଼ିବା ପୂର୍ବରୁ ମୋ ରକ୍ତରେ ଏ ଯଜ୍ଞଶାଳା ରଞ୍ଜିତ ହେଉ ।''

ରାଜା ପ୍ରସେନଜିତ୍ ଶେଷରେ ବୁଦ୍ଧଦେବଙ୍କ କଥାରେ ମତ ବଦଳାଇଲେ । ତାଙ୍କଠାରୁ ଦୀକ୍ଷା ନେଇ ଅହିଂସା ବ୍ରତ ଗ୍ରହଣ କଲେ ।

ଆଉ ଜଣେ ପ୍ରସିଦ୍ଧ ଶିଷ୍ୟ ହେଉଛନ୍ତି 'ଅଙ୍ଗୁଳିମାଳ' । ସେ ଜଣେ ଦୁର୍ଦ୍ଧର୍ଷ ଡକାଏତ । ଯେଉଁ ଲୋକକୁ ହତ୍ୟା କରୁଥିଲା, ତା ହାତର ଆଙ୍ଗୁଳିକୁ ମାଳା କରି ସବୁ ସମୟରେ ବେକରେ ଲମ୍ବାଇଥିଲା । ସେହି ଭୀଷଣ ପ୍ରକୃତିର ଡକାଏତ ଦୟାର୍ଦ୍ର ହୃଦୟ ବୁଦ୍ଧଦେବଙ୍କୁ ଥରେ ଭେଟିଲା । ଯା ନାମ ଶୁଣିଲେ ପ୍ରତ୍ୟେକ ଲୋକର ଅନ୍ତର ଥରି ଉଠେ, ଅସ୍ତ୍ରଶସ୍ତ୍ର ବିହୀନ ଏକାକୀ ଥିବା ସନ୍ୟାସୀ ଅବିଚଳିତ ଭାବରେ ଠିଆ ହୋଇଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ତାଙ୍କ ପାଖରେ ଶରଣ ପଶି ଅହିଂସା ଧର୍ମରେ ଦୀକ୍ଷିତ ହେଲା । ପରେ ସେ ହୋଇଥିଲା ସଙ୍ଘର ଜଣେ ପ୍ରଧାନ ସଭ୍ୟ ।

'ବିଶାଖା' କୋଶଳ ରାଜଧାନୀ ଶ୍ରାବସ୍ତୀର ଜଣେ ଧନୀ ମହାଜନଙ୍କ କନ୍ୟା । ପିଲା ଥିବା ସମୟରେ ସେ ନିଜ ପିତାମାତାଙ୍କ ସହିତ ବୁଦ୍ଧଦେବଙ୍କ ଧର୍ମ ଗ୍ରହଣ କରିଥିଲେ । କ୍ରମେ ସେ ବଡ଼ ହେଲେ ଏବଂ ପୂର୍ଣ୍ଣବର୍ଦ୍ଧନଙ୍କୁ ବିବାହ କଲେ । ପୂର୍ଣ୍ଣବର୍ଦ୍ଧନ ହେଉଛନ୍ତି ସେହି ଶ୍ରାବସ୍ତୀର ଅନ୍ୟ ଜଣେ ଧନୀ ମହାଜନ 'ମିଗର'ଙ୍କ ପୁତ୍ର ।

ମିଗର ବୌଦ୍ଧଧର୍ମ ଗ୍ରହଣ କରି ନ ଥିଲେ । ସେ ଜୈନ ଧର୍ମାବଲମ୍ବୀ ଥିଲେ । ବୁଦ୍ଧଦେବ ଓ ବୌଦ୍ଧଧର୍ମ ପ୍ରତି ତାଙ୍କର ତିଳେ ହେଲେ ସହାନୁଭୂତି ନ ଥିଲା । ବୁଦ୍ଧଦେବ ଥରେ ଶ୍ରାବସ୍ତୀ ଆସିଲେ । ବିଶାଖା ତାଙ୍କୁ ନିଜ ଗୃହକୁ ନିମନ୍ତ୍ରଣ କରି ଆଣିବାକୁ ଇଚ୍ଛା ପ୍ରକାଶ କଲେ ।

ମାତ୍ର ମିଗର ସେଥିରେ ସମ୍ମତି ଦେଲେ ନାହିଁ । ''ତୁମେ ତ ଜାଣିଛ, ସେହି ଲୋକଟା ବହୁ ଯୁବକଙ୍କୁ ଗୃହତ୍ୟାଗ କରାଇଅଛି । ଏହା ଫଳରେ

Digitized by srujanika@gmail.com

ସେ ଅନେକ ପରିବାରକୁ ଉଚ୍ଛନ୍ନ କରି ପକାଇଛି । ଏହା ଜାଣି ମଧ୍ୟ ତାଙ୍କୁ ଆମ ଘରକୁ ଆଣିବା ପାଇଁ କହୁଅଛ ?"

ବିଶାଖା ଉତ୍ତର ଦେଲେ, "ତାଙ୍କ ଶତ୍ରୁମାନେ ପ୍ରଚାର କରୁଥିବା ଏହା ଜନରବ ମାତ୍ର । ମୁଁ ଜାଣେ ସେ ପରିବାର ମଧ୍ୟରେ ଶାନ୍ତି ଓ ସୁଖ ଖେଳାଇ ଦିଅନ୍ତି ।"

"ସେ ଆମ ଘରକୁ ଆସିଲେ କଅଣ କ୍ଷତି ହେବ ?" ବିଶାଖାଙ୍କ ସ୍ୱାମୀ ପୂର୍ଣ୍ଣବର୍ଦ୍ଧନ ପିତାଙ୍କୁ ପ୍ରଶ୍ନ କଲେ । ଆମେ କେବଳ ସେହି ସାଧୁଙ୍କୁ ଟିକିଏ ସମ୍ମାନ ଦେଖାଇବା ।"

ଶେଷକୁ ମିଗର ସମ୍ମତ ହେଲେ । ବିଶାଖା ବୁଦ୍ଧଦେବଙ୍କୁ ଘରକୁ ନିମନ୍ତ୍ରଣ କରି ଆଣିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ଶ୍ୱଶୁର ଥରେ ମାତ୍ର ବୁଦ୍ଧଦେବଙ୍କ ଉପଦେଶ ଶୁଣିଲେ ନିଶ୍ଚୟ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବେ । ସେ ଏପରି ଭାବରେ ଆୟୋଜନ କଲେ, ବୁଦ୍ଧଦେବ ସ୍ଥାନୀୟ ଲୋକମାନଙ୍କୁ ଧର୍ମବ୍ୟାଖ୍ୟାନ ଦେଉଥିଲା ବେଳେ ମିଗର ଯେପରି ଶୁଣି ପାରିବେ ।

ସତକୁ ସତ ତାହାହିଁ ହେଲା । ମିଗର ବୁଦ୍ଧଦେବଙ୍କ ବାଣୀରେ ଏତେଦୂର ମୁଗ୍ଧ ହୋଇଗଲେ ଯେ ତାଙ୍କଠାରୁ ଦୀକ୍ଷା ଗ୍ରହଣ କଲେ ।

ଶ୍ରାବସ୍ତୀରେ ବୁଦ୍ଧଦେବ ଯେତେ ଥର ଧର୍ମବ୍ୟାଖ୍ୟାନ ଦେଇଥିଲେ, ବିଶାଖା ସେ ସବୁଥିରେ ଯୋଗ ଦେଉଥିଲେ । ଥରେ ଧର୍ମ ସଙ୍ଘରେ ବସି ଆଲୋଚନା ଶୁଣୁଥିଲା ବେଳେ ସେ ନିଜର ରତ୍ନଖଚିତ ମଥାମଣିଟିକୁ ବାହାର କରି ପାଖରେ ରଖି ଦେଇଥିଲେ । ସଙ୍ଘ ପରେ ଘରକୁ ଫେରି ଆସିଲା ବେଳେ ତାହା ସେ ଆଣିବାକୁ ଭୁଲିଗଲେ ।

ସଙ୍ଘରୁ ସମସ୍ତେ ଚାଲିଗଲା ପରେ ଅନ୍ୟତମ ପ୍ରଧାନ ଶିଷ୍ୟ ଶ୍ରଦ୍ଧାସ୍ପଦ ସନ୍ନ୍ୟାସୀ ଆନନ୍ଦ ସେ ମଥାମଣିଟିକୁ ଦେଖିଲେ । ସେ ଅନୁମାନ କଲେ, ଏହା ନିଶ୍ଚୟ ବିଶାଖାଙ୍କ ଅଳଙ୍କାର । ଜଣେ ଲୋକ ହାତରେ ତାକୁ ତାହାଙ୍କ ପାଖକୁ ପଠାଇଦେଲେ ।

ମାତ୍ର ବିଶାଖା ତାହା ନେଲେ ନାହିଁ । ସଙ୍ଘକୁ ଦାନ କରିଦେଲେ ।

ସେହି ଅଳଙ୍କାରଟିର ମୂଲ୍ୟ ଏତେ ବେଶୀ ଯେ, ଶ୍ରାବସ୍ତୀର କୌଣସି ଧନୀ ବ୍ୟକ୍ତି ମଧ୍ୟ ତାକୁ କିଣିବାକୁ ସମର୍ଥ ହୋଇପାରିଲେ ନାହିଁ ।

Digitized by srujanika@gmail.com

ବିଶାଖା ନିଜେ ଉପଯୁକ୍ତ ମୂଲ୍ୟ ଦେଇ ତାହା କିଣିଲେ ଏବଂ ସେହି ବିପୁଳ ଅର୍ଥରେ ବୁଦ୍ଧଦେବ ଓ ତାଙ୍କ ଶିଷ୍ୟଭକ୍ତମାନଙ୍କ ପାଇଁ ଏକ ବିହାର ନିର୍ମାଣ କରାଇ ଦେଲେ । ଏହାର ନାମ 'ପ୍ରାଚ୍ୟ ବିହାର' ରଖା ଯାଇଥିଲା । ବୁଦ୍ଧଦେବ ଶ୍ରାବସ୍ତୀକୁ ଆସିଲେ ଏହି ଉଦ୍ୟାନ ହିଁ ତାଙ୍କର ପ୍ରିୟ ଆଶ୍ରୟ ସ୍ଥଳ ଥିଲା ।

ଅନାଥପିଣ୍ଡିକ ଶ୍ରାବସ୍ତୀର ଜଣେ ଧନୀ ବ୍ୟବସାୟୀ । ଏହାଙ୍କ ପ୍ରକୃତ ନାମ ସୁଦତ୍ତ । ସେ ଦରିଦ୍ର, ଅନାଥ ଲୋକମାନଙ୍କୁ ବରାବର ସାହାଯ୍ୟ କରି ଆସୁଥିବାରୁ ଲୋକେ ଶ୍ରଦ୍ଧାରେ ନାମ ଦେଲେ ଅନାଥପିଣ୍ଡିକ—ଯିଏ ଅସହାୟ, ଅନାଥମାନଙ୍କୁ ଖାଦ୍ୟ ଆଦି ଯୋଗାନ୍ତି ।

ଥରେ ବ୍ୟବସାୟ କାର୍ଯ୍ୟରେ ରାଜଗୃହକୁ ଆସି ଅନାଥପିଣ୍ଡିକ ନିଜ ଭଉଣୀ ଘରେ ରହିଲେ । ସେଠାରେ ଦେଖିଲେ, କୌଣସି ପ୍ରଧାନ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ବ୍ୟାପକ ଆୟୋଜନ ଚାଲିଛି । ସେ ମନେକଲେ ବୋଧହୁଏ ମଗଧର ରାଜା ବିମ୍ବିସାରଙ୍କ ସମ୍ବର୍ଦ୍ଧନା ପାଇଁ ଏ ବିରାଟ ଆୟୋଜନ ।

ଭଗ୍ନୀପତି ତାଙ୍କର ଏ ସନ୍ଦେହ ଦୂର କରିଦେଲେ । କହିଲେ, "ମହାପୁରୁଷ ବୁଦ୍ଧଦେବ ତାଙ୍କ ଭିକ୍ଷୁଙ୍କ ଗହଣରେ ଆସୁ ଅଛନ୍ତି । ସେଥି-ପାଇଁ ଏ ଆୟୋଜନ ।"

ଅନାଥପିଣ୍ଡିକ ଆଗ୍ରହର ସହିତ ପ୍ରଶ୍ନ କଲେ, "ସେ କେଉଁଠାରେ ଅଛନ୍ତି ?"

"ବର୍ତ୍ତମାନ ସେ ସୀତା ବନରେ ଅବସ୍ଥାନ କରୁ ଅଛନ୍ତି ।" ଭଗ୍ନୀପତି ଉତ୍ତର ଦେଲେ ।

ଅନାଥପିଣ୍ଡିକ ସଙ୍ଗେ ସଙ୍ଗେ ସେଠାକୁ ଯାଇ ବୁଦ୍ଧଦେବଙ୍କୁ ଦର୍ଶନ କରିବାକୁ ବ୍ୟଗ୍ର ହୋଇ ଉଠିଲେ । ମାତ୍ର ଭଗ୍ନୀପତି ବାରଣ କଲେ । କହିଲେ, "ଆଜି ଆଉ ସମୟ ହେବ ନାହିଁ । ତୁମେ କାଲି ଅତି ପ୍ରତ୍ୟୁଷରୁ ଗଲେ ଦର୍ଶନ ପାଇବ ।"

ଅନାଥପିଣ୍ଡିକଙ୍କୁ ରାତିରେ ନିଦ ହେଲା ନାହିଁ । ସେ ବାରମ୍ବାର ବିଛଣାରୁ ଉଠି ପଡନ୍ତି । ଭାବନ୍ତି, ବୋଧହୁଏ ସକାଳ ହୋଇଗଲାଣି । ଏହିପରି ଛଟପଟ ହୋଇ ଶେଷରେ ସୂର୍ଯ୍ୟୋଦୟ ପୂର୍ବରୁ ସୀତାବନ ଅଭିମୁଖେ ଯାତ୍ରା କଲେ । ସେଠାରେ ଯେତେବେଳେ ପହଞ୍ଚିଲେ,

Digitized by srujanika@gmail.com

ସେତେବେଳକୁ ବୁଦ୍ଧଦେବଙ୍କର ନିଦ୍ରାଭଙ୍ଗ ହୋଇ ନାହିଁ

ବୁଦ୍ଧଦେବ ତାଙ୍କୁ ଆନନ୍ଦର ସହିତ ଗ୍ରହଣ କଲେ । ଉପଦେଶ ଛଳରେ କହିଲେ, "ଧର୍ମରେ ମନ ଦିଅ ।" ଅନାଥପିଣ୍ଡିକ ତାଙ୍କୁ ଦର୍ଶନ କରି ଏବଂ ତାଙ୍କ ବାଣୀ ଶୁଣି ଏପରି ଅଭିଭୂତ ହୋଇ ପଡ଼ିଲେ ଯେ, ସଙ୍ଗେ ସଙ୍ଗେ ଗୃହଜଞ୍ଜାଳ ତ୍ୟାଗ କରି ସନ୍ନ୍ୟାସୀ ହୋଇ ସଙ୍ଘରେ ମିଶି ଯିବାକୁ ଇଚ୍ଛା ପ୍ରକାଶ କଲେ । "ମୋର ଇଚ୍ଛା ହେଉଛି, ସମସ୍ତ ଧନ ସମ୍ପତ୍ତି, ପରିବାର ଦାୟିତ୍ୱ ପଛକୁ ପକାଇ ଦେଇ ଭିକ୍ଷୁକ ହେବି ।" କର ଯୋଡ଼ି ବୁଦ୍ଧଦେବଙ୍କ ପାଖରେ ପ୍ରାର୍ଥନା କଲେ ।

"ଧନୀ ହେବା ଅନ୍ୟାୟ ନୁହେଁ ।" ବୁଦ୍ଧଦେବ ସାନ୍ତ୍ୱନା ଦେଲେ । ମାତ୍ର ଧନ ପ୍ରତି ମୋହ, ଅତ୍ୟଧିକ ଆସକ୍ତି ହିଁ ଦୁଃଖଦାୟକ । ବିଶେଷତଃ ସେ ଧନ ଯଦି ଦୀନ ଦରିଦ୍ରଙ୍କ ସେବାରେ, ମଙ୍ଗଳ କାର୍ଯ୍ୟରେ ବ୍ୟୟ କରାଯାଏ, ତେବେ ତ ସୁଖର କଥା ।"

"ବହୁ ଲୋକ ସେମାନଙ୍କ ଭରଣ ପୋଷଣ ପାଇଁ ମୋ ଉପରେ ନିର୍ଭର କରନ୍ତି ।" ଅନାଥପିଣ୍ଡିକ ନିଜ ଅବସ୍ଥାର ସୂଚନା ଦେଲେ ।

"ତା ହେଲେ ତୁମେ କିପରି ସେମାନଙ୍କୁ ଭୋକ ଉପାସରେ ରଖି ସନ୍ନ୍ୟାସ ଧର୍ମ ଗ୍ରହଣ କରିବ ?" ବୁଦ୍ଧଦେବ ପ୍ରଶ୍ନ କଲେ । "ଧର୍ମ ପଥରେ ଚଳିବାକୁ ହେଲେ ଯେ ଘର ପରିବାର ତ୍ୟାଗ କରି ଅରଣ୍ୟରେ ବୁଲିବ, ତାହା ତ ଠିକ ନୁହେଁ । ତୁମେ ଯେପରି ଭାବରେ ସଂସାରରେ ଚଳୁଛ, ତାହା ତ ଅତି ଉତ୍ତମ । କାହିଁକି ଏ ପଥ ତ୍ୟାଗ କରିବ ?"

ଅନାଥପିଣ୍ଡିକ ବୁଦ୍ଧଦେବଙ୍କର ଏହି ଉପଦେଶରେ ପ୍ରଫୁଲ୍ଲିତ ହେଲେ । ଭିକ୍ଷୁମାନେ ବର୍ଷା କାଳ ବିତାଇବା ପାଇଁ ଶ୍ରାବସ୍ତୀରେ ସେ ଗୋଟିଏ ମଠ ନିର୍ମାଣ କରିଦେବାକୁ ଅନୁମତି ମାଗିଲେ । ବୁଦ୍ଧଦେବ ଏଥିରେ ସମ୍ମତି ଜଣାଇଲେ ।

ମଠ ପାଇଁ ଉପଯୁକ୍ତ ସ୍ଥାନ ବାଛିବା ଲାଗି ଅନାଥପିଣ୍ଡିକ ବୁଦ୍ଧଦେବଙ୍କ ପ୍ରଧାନ ଶିଷ୍ୟ ସାରିପୁତ୍ରଙ୍କ ସାହାଯ୍ୟ କାମନା କଲେ । ସେମାନେ ସୁନ୍ଦର ସ୍ଥାନଟିଏ ସହରର ଅଳ୍ପ ଦୂରରେ ମନୋନୀତ କଲେ । ତାହା ଧ୍ୟାନ ଓ ପ୍ରାର୍ଥନା କରିବା ପାଇଁ ଯୋଗ୍ୟ ସ୍ଥାନ ବିବେଚିତ ହେଲା । ମାତ୍ର ସମସ୍ୟା ଦେଖା ଦେଲା । ଜମିର ମାଲିକ ଯୁବରାଜ 'ଜେଟା' ତାହା ବିକ୍ରି କରିବାକୁ ରାଜି ହେଲେ ନାହିଁ ।

Digitized by srujanika@gmail.com

ଅନାଥପିଣ୍ଡିକ ଜମି କିଣିବା ଲାଗି ବାରମ୍ବାର ଜିଗର ଲଗାଇବାରୁ ଯୁବରାଜ ଉତ୍ତର ଦେଲେ, ''ଯଦି ସେ ସମସ୍ତ ଜମି ତୁମେ ସୁନାରେ ଛାଇଁ ଦେବ, ତେବେ ସେହି ମୂଲ୍ୟରେ ତାହା ମୁଁ ବିକିବି ।''

ସଙ୍ଗେ ସଙ୍ଗେ ସୁବର୍ଣ୍ଣ ମୁଦ୍ରା ପରିପୂର୍ଣ୍ଣ ବୋଝାଇ ଗାଡି ଆଣି ସେ ଜମି ଉପରେ ତାହା ବିଛାଇ ଦେବାକୁ ଲାଗିଲେ ।

ଏହା ଯୁବରାଜ କଳ୍ପନା କରି ନ ଥିଲେ । ସଙ୍କୁଚିତ ହୋଇ ସେ କହିଲେ, ''ମୁଁ କେବଳ ରହସ୍ୟ କରୁଥିଲି ।''

ଅନାଥପିଣ୍ଡିକ ସେଥିରେ ରାଜି ହେଲେ ନାହିଁ । ସମସ୍ୟାର ସମାଧାନ ପାଇଁ ବିଚାରପତିଙ୍କ ସାହାଯ୍ୟ ନିଆଗଲା । ବିଚାରପତି ରାୟ ଦେଲେ, ''ଜମିର ମାଲିକ ରହସ୍ୟରେ ଦାବୀ କରି ପାରି ଥାଆନ୍ତି; ମାତ୍ର କ୍ରେତା ଯେତେବେଳେ ସେ ଦାବୀ ପୂରଣ କଲେ, ସେତେବେଳେ ସେ ଜମି ପାଇବାକୁ ହକଦାର ।''

ଯୁବରାଜ ଜେତା ଅନିଚ୍ଛା ସତ୍ତ୍ୱେ ଜମି ବିକ୍ରି କରିବାକୁ ବାଧ୍ୟ ହେଲେ । ପରେ ଜାଣିଲେ ଯେ ବୁଦ୍ଧଦେବଙ୍କ ଭିକ୍ଷୁମାନଙ୍କ ପାଇଁ ସେଠାରେ ଆଶ୍ରମ ନିର୍ମାଣ କରାଯିବ । ସେ ଖୁବ୍ ଆନନ୍ଦିତ ହେଲେ ଏବଂ ଜମି ବାବଦ ପାଇଥିବା ସୁନା ସେହି ମଠ ନିର୍ମାଣ ପାଇଁ ଦାନ କରିବାକୁ ଚାହିଁଲେ।ସେ ସେଥିରୁ ଅର୍ଦ୍ଧେକ ନେଇ କହିଲେ, ''ଜମିତକ ବର୍ତ୍ତମାନ ତୁମର । ମାତ୍ର ସେଥିରେ ଥିବା ଉଦ୍ଭିଦ ମୋ ଅଧିକାରରେ ରହିଛି । ମୋ ଅଂଶତକ ମୁଁ ଏବେ ଗୁରୁଙ୍କ ସେବା ଲାଗି ସମର୍ପଣ କରିଦେଲି ।''

ସେଠାରେ ଯେଉଁ ଆଶ୍ରମ ଗଢି ଉଠିଲା, ତାହାର ନାମ ହେଲା 'ଜେତବନ ବିହାର' । ଏହି ଆଶ୍ରମ ବୁଦ୍ଧଦେବଙ୍କର ଗୋଟିଏ ପ୍ରିୟସ୍ଥଳୀ ହୋଇଥିଲା । ଏହିଠାରୁ ସେ ନାନା ଉତ୍କୃଷ୍ଟ ଉପଦେଶ ପ୍ରଚାର କରିଥିଲେ । ରାଜା ପ୍ରସେନଜିତ୍ ନିଜର ପାତ୍ର ମନ୍ତ୍ରୀମାନଙ୍କ ଗହଣରେ ବାରମ୍ବାର ଏଠାକୁ ଆସି ଗୁରୁଙ୍କ ପାଦ ବନ୍ଦନା କରୁଥିଲେ । ବୁଦ୍ଧଦେବ ତାଙ୍କୁ ବହୁ ସତ୍ ଉପଦେଶ ଏହିଠାରେ ଦେଇଥିଲେ ।

ରାଜ୍ୟ ଶାସନ ସମ୍ପର୍କରେ ସେ କହୁଥିଲେ, ''ତୁମର ପ୍ରଜାମାନଙ୍କୁ ନିଜର ସନ୍ତାନ ବୋଲି ମନେ କରିବ ।ସେମାନଙ୍କୁ ଦୁଃଖ କଷ୍ଟ ଦେବ ନାହିଁ । କିନ୍ତୁ ଆଇନ ମାନି, ଶୃଙ୍ଖଳା ରକ୍ଷା କରି ଚଳିବା ପାଇଁ ଶିକ୍ଷା ଦେବ । ଦରିଦ୍ର ଓ ରୋଗୀଙ୍କ ପ୍ରତି ସବୁବେଳେ ସହାୟକ ହେଉଥିବ ।''

Digitized by srujanika@gmail.com

ଥରେ ଗୁରୁଦେବ ତାଙ୍କ ପ୍ରିୟ ଶିଷ୍ୟ ଆନନ୍ଦଙ୍କ ସହିତ ସେଠାରେ ଅବସ୍ଥାନ କରୁଥିଲେ । ପ୍ରତି ଦିନର ଅଭ୍ୟାସ ବଶତଃ ଆନନ୍ଦ ପ୍ରତ୍ୟୁଷରୁ ଉଠିଲେ ଏବଂ ଭିକ୍ଷା ପାତ୍ର ଧରି ସହର ଭିତରକୁ ଭିକ୍ଷା ମାଗିବାକୁ ଚାଲିଗଲେ। ଭିକ୍ଷା ଧରି ଆଶ୍ରମକୁ ଫେରି ଆସିଲା ବେଳେ ତାଙ୍କୁ ପ୍ରବଳ ଶୋଷ ହେବାରୁ ନିକଟରେ ଥିବା ଗୋଟିଏ କୂଅ ପାଖକୁ ଗଲେ । ଦେଖିଲେ, ଜଣେ ଅଜାତି ଚଣ୍ଡାଳ କନ୍ୟା କୂଅରୁ ପାଣି କାଢୁଅଛି ।

"ମୋତେ ଭାରି ଶୋଷ ହେଉଛି ଭଉଣୀ । ତୁମ ପାତ୍ରରୁ କିଛି ପାଣି ଦେଲେ ପିଅନ୍ତି ।" ଆନନ୍ଦ ଅନୁରୋଧ କଲେ ।

ବାଳିକାଟି ସ୍ତମ୍ଭୀଭୂତ ହୋଇଗଲା । କହିଲା, "ମୁଁ ଯେ ଗୋଟାଏ ଚଣ୍ଡାଳ କନ୍ୟା, ତୁମେ କଅଣ ଜାଣ ନାହିଁ ?"

"ମୁଁ ତୁମ ବଂଶ ବା ଜାତି ତ ମାଗୁ ନାହିଁ । ମାଗୁଛି ଖାଲି ପାଣି ମୁନ୍ଦାଏ । ଦେଲେ ମୁଁ ପିଇବି ଓ ମୋର ତୃଷା ନିବାରଣ କରିବି ।" ଆନନ୍ଦ ଉତ୍ତର ଦେଲେ ।

ବୁଦ୍ଧଦେବ ଛୁଆଁ-ଅଛୁଆଁ, ଜାତି-ଅଜାତି ମାନୁ ନ ଥିଲେ । ସେ କହୁଥିଲେ,"ଜାତିଭେଦ ପ୍ରଥା ମନୁଷ୍ୟ ସମାଜ ପ୍ରତି ଅପମାନ ମାତ୍ର । ସମସ୍ତ ମାନବ ସମାନ ।"ତେଣୁ ତାଙ୍କ ଅନୁଗତ ଶିଷ୍ୟ ଆନନ୍ଦ ଚଣ୍ଡାଳ କନ୍ୟାଠାରୁ ଜଳ ଗ୍ରହଣ କରିବାକୁ ଡିଲେ ହେଲେ କୁଣ୍ଠିତ ହୋଇ ନ ଥିଲେ ।



Digitized by srujanika@gmail.com

# କାହାଣୀ ମାଧ୍ୟମରେ ପ୍ରଚାର

ବୁଦ୍ଧଦେବଙ୍କ ସମ୍ପର୍କରେ ବହୁତ କାହାଣୀ ଶୁଣାଯାଏ । ସେ କିପରି ଦୁଇ ଦଳଙ୍କ ମଧ୍ୟରେ ଲାଗିଥିବା ଯୁଦ୍ଧ ବନ୍ଦ କରାଇ ଶାନ୍ତିରକ୍ଷା କରିଥିଲେ, ସେ ସମ୍ପର୍କରେ ଗୋଟିଏ ସୁନ୍ଦର କାହାଣୀ ଅଛି । ରୋହିଣୀ ନଦୀରେ ବହି ଯାଉଥିବା ଜଳଧାର ପାଇଁ ତାଙ୍କ ଶାକ୍ୟବଂଶ ଓ 'ଖୋଲିୟାସ'ବଂଶ ମଧ୍ୟରେ କନ୍ଦଳ ସୃଷ୍ଟି ହେଲା । ଯୁଦ୍ଧ ଆରମ୍ଭ ହୋଇଯିବା ଉପରେ । ଉଭୟ ପକ୍ଷରୁ ବୀର ଯୋଦ୍ଧାମାନେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଯୁଦ୍ଧପଡ଼ିଆରେ ରୁଣ୍ଡ । ଠିକ୍ ସେହି ସମୟରେ ଦୁଇ ପକ୍ଷର ଯୋଦ୍ଧାଙ୍କ ମଝିରେ ଆସି ଠିଆ ହୋଇଗଲେ ପୀତବସନଧାରୀ ଦୟାର୍ଦ୍ର ହୃଦୟ ବୁଦ୍ଧଦେବ ।

Digitized by srujanika@gmail.com

"ଏ ଜଳସ୍ରୋତରେ ସ୍ୱତନ୍ତ୍ର ଭାବରେ କିଛି ମୂଲ୍ୟ ଅଛି କି ନା ତୁମ ଲୋକମାନଙ୍କ ଉପକାରରେ ଲାଗିବା ପାଇଁ ଏହା ଦରକାର ?" ଶାକ୍ୟ ମୁନି ଉଭୟ ପକ୍ଷଙ୍କୁ ପଚାରି ପ୍ରଶ୍ନ କଲେ ।

ଉଭୟ ରାଜା ଏକସମୟରେ କହି ଉଠିଲେ, "କେବଳ ଆମ ଲୋକଙ୍କ କାମରେ ଲାଗିବା ହିଁ ତାର ମୂଲ୍ୟ ।"

"ତୁମେ ଯଦି ଏହା ପାଇଁ ଯୁଦ୍ଧରେ ରତ ହେବ, ତେବେ ତୁମ ଉଭୟ ପକ୍ଷର ଲୋକେ ତ ମରିବେ ।" ବୁଦ୍ଧଦେବ ବ୍ୟାକୁଳ କଣ୍ଠରେ କହିଲେ । "ବର୍ତ୍ତମାନ ବିଚାରି ସ୍ଥିର କର, ତୁମ ପ୍ରଜାମାନଙ୍କ ଜୀବନ ବଡ ନା ଏ ଜଳଧାରର ଲୋଭ ବଡ ?"

ଦୁଇ ପକ୍ଷ ଯାକ ଏହା ଶୁଣି ଯୁଦ୍ଧରୁ ନିବୃତ୍ତ ହେଲେ । ଆପୋଷ ସମାଧାନରେ ଜଳଧାର ବଣ୍ଟନ କରାଗଲା ।

ଆଉ ଦିନେ ବୁଦ୍ଧଦେବ ପ୍ରତି ଦିନର କର୍ତ୍ତବ୍ୟ ହେତୁ ଭିକ୍ଷାଥାଳ ଧରି ବୁଲୁ ଅଛନ୍ତି, ଜଣେ ନିର୍ବୋଧ ଲୋକ ଅକାରଣରେ କଦର୍ଯ୍ୟ ଭାଷାରେ ତାଙ୍କୁ ଗାଳି ଦେଲା । ଗୁରୁଦେବ ଶାନ୍ତ ଧୀର କଣ୍ଠରେ ତାଙ୍କୁ ପଚାରିଲେ, "ବତ୍ସ ଶୁଣ ଶୁଣ । ତୁମେ ମୋତେ ଗୋଟିଏ ଦ୍ରବ୍ୟ ଦାନ କରିବାକୁ ଇଚ୍ଛା କଲ । ମୁଁ ଯଦି ତାକୁ ଗ୍ରହଣ ନ କରିବି, ତେବେ ସେ ଦ୍ରବ୍ୟ କାହାର ହେବ ?" "ତାହା ମୋର । ମୋ ପାଖରେ ରହିବ ।" ଯୁବକଙ୍କ ଉତ୍ତର।

"ତୁମେ ମୋତେ ଗାଳି ଦେଲ । ମାତ୍ର ମୁଁ ତାହା ଗ୍ରହଣ କଲି ନାହିଁ ।" ବୁଦ୍ଧଦେବ ବୁଝାଇ ଦେଲେ । "ଧ୍ୱନି ସଙ୍ଗେ ସଙ୍ଗେ ପ୍ରତିଧ୍ୱନି ରହିଥାଏ, କାୟା ସଙ୍ଗେ ସଙ୍ଗେ ଛାୟା ମଧ୍ୟ ସେହିପରି । କୁକର୍ମୀକୁ ତାର ମନ୍ଦ କର୍ମ ଗ୍ରାସ କରିଥାଏ ।"

ଭଲ ରୂପେ ବୁଝାଇ ବୁଦ୍ଧଦେବ ଗୋଟିଏ କାହାଣୀ କହିଥିଲେ ।

ବାରାଣସୀର ରାଜା ଶକ୍ତିଶାଳୀ ସମ୍ରାଟ ଥିଲେ । ପ୍ରତିବେଶୀ ଛୋଟ ରାଜ୍ୟ କୋଶଳର ରାଜା ଦୁର୍ବଳ ଥିବାରୁ ସେ କୋଶଳ ରାଜ୍ୟ ଉପରେ ଚଢାଉ କଲେ । ରାଜା ଓ ରାଣୀ ରାଜ୍ୟ ଛାଡି ପଳାଇଗଲେ ଏବଂ ବାରାଣସୀର ଗୋଟିଏ କୁମ୍ଭକାର ଗୃହରେ ଆଶ୍ରୟ ନେଲେ । ସେମାନଙ୍କ ପୁତ୍ର 'ଦିଗ୍‌ଭୁ' ସେହିଠାରେ ଜନ୍ମ ହୋଇଥିଲେ ।

ଦିଗ୍‌ଭୁ ପିଲା ଥିଲାବେଳେ ରାଜା ରାଣୀଙ୍କ ପରିଚୟ ସମସ୍ତେ ଜାଣି-ଗଲେ । ସେମାନଙ୍କୁ ଗିରଫ କରି ବନ୍ଦୀ ଘରେ ରଖାଗଲା । ପିତାଙ୍କର ପୁଅ ପ୍ରତି ଶେଷ କଥା ଥିଲା, "ଘୃଣାକୁ ଘୃଣା ଦ୍ୱାରା ଖଣ୍ଡନ କରାଯାଇ ନ

Digitized by srujanika@gmail.com

ପାରେ । ପ୍ରତି ଘୃଣା ନ କଲେ ହିଁ ବିଦ୍ୱେଷ ଦୂର ହୁଏ ।''

ଦିଗ୍‌ଭୁଙ୍କ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସେ ବହୁ ବିଦ୍ୟାରେ ଧୁରନ୍ଧର ହୋଇ ଉଠିଲେ । ରାଜ ଦରବାରରେ ତାଙ୍କୁ ଗୋଟିଏ ଚାକିରିରେ ନିଯୁକ୍ତି ମିଳିଲା । ସେ ତାଙ୍କ କାର୍ଯ୍ୟକଳାପ ଯୋଗୁ ଅତି ଶୀଘ୍ର ରାଜାଙ୍କର ବିଶ୍ୱାସ-ଭାଜନ ହେଲେ ଓ ଚାକିରିରେ ଉଚ୍ଚ ପଦକୁ ଉନ୍ନୀତ ହେଲେ ।

ଥରେ ବଣକୁ ଯାଇ ଶିକାର କରୁଥିଲା ବେଳେ ରାଜା ନିଜ ଦଳରୁ ଅଲଗା ହୋଇଗଲେ । ଜଙ୍ଗଲ ଭିତରେ ବାଟ ବଣା ହୋଇ ଦଳ ସହିତ ମିଶି ପାରିଲେ ନାହିଁ । କେବଳ ଦିଗ୍‌ଭୁ ତାଙ୍କ ସହିତ ରହିଥିଲେ । ଜଙ୍ଗଲରେ ବୁଲି ବୁଲି ରାଜା କ୍ଲାନ୍ତ ହୋଇ ପଡ଼ିଲେ । ଗୋଟିଏ ବୃକ୍ଷ ତଳେ ଦିଗ୍‌ଭୁଙ୍କ ଜଙ୍ଘ ଉପରେ ମୁଣ୍ଡ ରଖି ଗାଢ଼ ନିଦରେ ଶୋଇ ପଡ଼ିଲେ ।

ଏହିଭଳି ଏକ ସୁବିଧା ଦିଗ୍‌ଭୁ କାମନା କରୁଥିଲେ । ସେ ତାଙ୍କ ଖଣ୍ଡା ଖୋଳ ଭିତରୁ ବାହାର କରି ଭାବିଲେ, ''ତୁ ମୋର ପିତା ଓ ମାତାଙ୍କୁ ହତ୍ୟା କରିଅଛୁ । ବର୍ତ୍ତମାନ ମୋର ପାଳି ।''

ମାତ୍ର ହଠାତ୍ ତାଙ୍କ ପିତାଙ୍କ ଅନ୍ତିମ ବାଣୀ ମନରେ ଚହଟି ଉଠିଲା । ଦିଗ୍‌ଭୁ ଖଣ୍ଡାକୁ ଆସ୍ତେ ଖୋଳ ଭିତରେ ପୂରାଇ ଦେଲେ । ଭୟରେ କାତର ହୋଇ ପଡ଼ିଥିବା ରାଜାଙ୍କୁ ନିରାପଦରେ ଉଆସକୁ ଫେରାଇ ଆଣିଲେ ।

ଦିଗ୍‌ଭୁଙ୍କ ଏହି ମହତ୍ ଭାବନା ବାରାଣସୀ ରାଜାଙ୍କ ମନ ତରଳାଇ ଦେଲା । ସେ ଅନୁତାପ କରିବାକୁ ଲାଗିଲେ । ପିତାମାତାଙ୍କୁ ହତ୍ୟା କରି ରାଜ୍ୟ ଓ ଧନ ସମ୍ପତ୍ତି ଯାହା ଅପହରଣ କରି ନେଇଥିଲେ, ସେ ସମସ୍ତ ଫେରାଇ ଦେଲେ ଏବଂ ନିଜ କନ୍ୟାଙ୍କୁ ତାଙ୍କ ସହିତ ବିବାହ କରାଇ ଦେଲେ ।

ବୁଦ୍ଧଦେବ ଲୋକମାନଙ୍କୁ ଉପଦେଶ ଦେଉଥିଲେ, ଦିଗ୍‌ଭୁ ଭଳି ଶତ୍ରୁ ପ୍ରତି କ୍ଷମା ଆଚରଣ କରିବ ।

ସେ ନିଜ ପ୍ରବର୍ତ୍ତିତ ମଧ୍ୟମ ପଥ ଧର୍ମକୁ ବୀଣା ସହିତ ତୁଳନା କରି ଲୋକଙ୍କୁ ବୁଝାଉଥିଲେ । ବୀଣାର ତାର ଯଦି ଖୁବ୍ ଟାଣ ହୋଇ ବନ୍ଧା ଯାଇଥାଏ କିମ୍ବା ଯେତେବେଳେ ହୁଗୁଳା ହୋଇ ଯାଇଥାଏ, ସେତେ-ବେଳେ ସେଥିରୁ ସୁନ୍ଦର ଶବ୍ଦ ବାହାରେ ନାହିଁ । ଭଲ ଶବ୍ଦ ଶୁଣିବାକୁ ହେଲେ ତାର ସବୁ ଅଧିକ ଟାଣ ବା ଅଧିକ ହୁଗୁଳା ନ କରି ମଧ୍ୟମ ପ୍ରକାରରେ ବନ୍ଧା ଯିବା ଦରକାର । ସେହିପରି ସଂସାରରେ ଅତି ବେଶି ଆସକ୍ତ ନ ହୋଇ କିମ୍ବା ଏକାବେଳକେ ନିରାସକ୍ତ ରହି ଚଳିଲେ ଜୀବନ ସାର୍ଥକ ହୁଏ ନାହିଁ ।

Digitized by srujanika@gmail.com

ଜଣେ ଶିଷ୍ୟ ନିର୍ବାଣ ସମ୍ପର୍କରେ ବୁଝାଇ ଦେବାକୁ ଗୁରୁଦେବଙ୍କ ପାଖରେ ଅଳି କଲେ ।

"ଦେଖ, ଛୋଟ ଛୋଟ ବାଳକ ବାଳିକା ବାଲିରେ ଘର କରି ଖେଳୁ ଅଛନ୍ତି । ଯେ ପର୍ଯ୍ୟନ୍ତ ଖେଳରେ ସେମାନଙ୍କର ମନ ଲାଗିଥିବ, ସେମାନେ ସେ ପର୍ଯ୍ୟନ୍ତ ଏହି ବାଲିଘର ଖେଳରୁ ଆନନ୍ଦ ପାଉଥିବେ ଏବଂ ସେଥିରେ ମାତି ରହିଥିବେ ।"

"ହଁ, ତାହା ହିଁ ନିୟମ ଗୁରୁଦେବ ।" ଶିଷ୍ୟ ଜଣକ ଉତ୍ତର ଦେଲେ ।

"କିନ୍ତୁ ଯେତେବେଳେ ଖେଳ ସରିଯିବ, ମନ ଛାଡିଯିବ, ସେତେବେଳେ ସେମାନେ ଗୋଇଠା ମାରି ସେ ସବୁକୁ ଭାଙ୍ଗି ଛିନ୍ନ ଭିନ୍ନ କରି ଦେବେ ।"

"ସେହିପରି ମନୁଷ୍ୟର ଯେ ପର୍ଯ୍ୟନ୍ତ ଜୀବନ ରହିଛି, ସେ ପର୍ଯ୍ୟନ୍ତ ଏ ଶରୀର ପ୍ରତି ସେ ମୋହ ରଖିଥାଏ ଯେତେବେଳେ ସେ ମୋହ ଦୂର ହୋଇଯାଏ, ଶରୀର ଭାଙ୍ଗି ସେତେବେଳେ ଚୂରମାର ହୁଏ । କିଛି ମୋହ ବା କାମନା ନ ଥିବାରୁ ଆତ୍ମା ନିର୍ବାଣ ପ୍ରାପ୍ତ ହୁଏ ।"

ଥରେ ବୁଦ୍ଧଦେବ ଶ୍ରାବସ୍ତୀକୁ ଯାତ୍ରା କରୁଥିଲେ । ବାଟରେ ଜଣେ ମହିଳା 'କିସାଗୌତମୀ' ନିଜର ମୃତ ପିଲାକୁ ଧରି ଆସି ତାଙ୍କ ଆଗରେ ଠିଆ ହେଲା । ନିରାହା ମହିଳାର ବିଶ୍ୱାସ, ବୁଦ୍ଧଦେବ ତାଙ୍କ ଐଶ୍ୱରିକ ଶକ୍ତି ବଳରେ ତାର ମୃତ ପୁତ୍ରକୁ ପୁଣି ବଞ୍ଚାଇ ଦେଇ ପାରିବେ ।

କିସାଗୌତମୀ ଗୋଟିଏ ଦରିଦ୍ର ପରିବାରର କନ୍ୟା । ଶ୍ରାବସ୍ତୀର ଜଣେ ଧନୀ ବଣିକକୁ ବିବାହ କରିଥିଲା । ତାର ଗୋଟିଏ ମାତ୍ର ପୁଅ । ତାକୁ ସେ ନିଜ ଜୀବନ ଭଳି ସୁଖ ପାଉଥିଲା । ଦିନେ ପିଲାଟି ବଗିଚାରେ ଖେଳୁଥିଲା ବେଳେ ଗୋଟାଏ ବିଷାକ୍ତ ସାପ ତାକୁ ଦଂଶନ କଲା । ପିଲାଟି ସଙ୍ଗେ ସଙ୍ଗେ ମରିଗଲା । ଗୌତମୀ ଶୋକରେ ପାଗଳିନୀ ପରି ହୋଇଗଲା । ସେ ମୃତ ପିଲାଟିର ହେମ-କାକର ଦେହ କୋଳରେ ଧରି ଜନପଦ, ରାସ୍ତା ଗ୍ରାମିଆଡ଼େ ଘୁରି ବୁଲିଲା ଏବଂ ଯାହାକୁ ଦେଖିଲା, ତାକୁ ବ୍ୟାକୁଳ କଣ୍ଠରେ ପିଲାଟିକୁ ବଞ୍ଚାଇ ଦେବା ପାଇଁ ଅଳି କଲା ।

ପ୍ରତ୍ୟେକ ଲୋକ ତାର ଅବସ୍ଥା ଦେଖି ଶୋକାକୁଳ ହୋଇ ପଡୁଥିଲେ ମଧ୍ୟ କେହି କୌଣସି ପ୍ରକାର ସାହାଯ୍ୟ କରିବା ସମ୍ଭବ ହେଲା ନାହିଁ । ଶେଷରେ ଜଣେ ବୃଦ୍ଧ ପଥଯାତ୍ରୀ କହିଲେ, "ତୁମେ

Digitized by srujanika@gmail.com

ବୁଦ୍ଧଦେବଙ୍କ ପାଖକୁ ଯାଇ ସାହାଯ୍ୟ ମାଗ । ସେ ଜଣେ ସିଦ୍ଧ ପୁରୁଷ । ଲୋକମାନଙ୍କ ଦୁଃଖ ଶୋକ ଦୂର କରୁଛନ୍ତି ବୋଲି ସମସ୍ତେ କହୁଛନ୍ତି ।"

ଗୌତମୀ ବୁଦ୍ଧଦେବଙ୍କ ଦର୍ଶନ ପାଇଁ ଧାଇଁ ଧାଇଁ ଗଲା । ସେତେ-ବେଳେ ମଧ୍ୟ ମୃତ ପିଲାଟିର ଦେହ କୋଳରେ ଜାବୁଡ଼ି ଧରିଥାଏ । ବୁଦ୍ଧଦେବଙ୍କ ପାଦ ତଳେ ମୃତ ଦେହଟିକୁ ଶୁଆଇ ଦେଇ ବିକଳରେ କହିଲା, "ଭଗବାନ୍, ମୋତେ ଦୟା କର । ମୋ ପୁଅ ଯେମିତି ବଞ୍ଚି ଉଠିବ, ସେଥିପାଇଁ ଔଷଧ ଦିଅ ।"

ତାର ବିକଳ ଦେଖି ବୁଦ୍ଧଦେବ ଧୀର ସ୍ୱରରେ କହିଲେ, "ମୁଠାଏ ସୋରିଷ ଆଣି ମୋତେ ଦେଇପାରିବ ?"

"ମୁଁ ସଙ୍ଗେ ସଙ୍ଗେ ନେଇ ଆସୁଛି ।" ଆଗ୍ରହରେ ଗୌତମୀ କହି ପକେଇଲା । ସେ ଅତି ତରତର ହୋଇ ସୋରିଷ ଆଣିବାକୁ ଚାଲି ଯାଉଥିବା ଦେଖି ବୁଦ୍ଧଦେବ ହାତ ଠାରି ତାକୁ ଅଟକାଇଲେ । କହିଲେ, "କିନ୍ତୁ ମନେ ରଖ, ସେ ସୋରିଷ ଯାହାଙ୍କ ଘରୁ ଆଣିବ, ତାଙ୍କ ପରିବାରରେ ଯେପରି କେହି ମରି ନ ଥିବେ ।"

ଗୌତମୀ ମୁଠାଏ ସୋରିଷ ପାଇଁ ଏ ଘରୁ ସେ ଘର ମାଗି ବୁଲିଲା । ପ୍ରତି ଘରେ, ପ୍ରତି ପରିବାରରେ ଏବଂ ପ୍ରତ୍ୟେକ ଲୋକଙ୍କୁ ସେ ପଚାରୁ ଥିଲେ, "ତୁମ ଘରେ କେହି କେବେ ମରି ଅଛନ୍ତି କି ?" ସମସ୍ତଙ୍କଠାରୁ ସେ ଏକପ୍ରକାର ଉତ୍ତର ପାଉଥିଲା, "ଏ ଘରେ ଯେଉଁମାନେ ବଞ୍ଚି ଅଛନ୍ତି, ସେମାନଙ୍କ ସଂଖ୍ୟା ତ କମ । ମାତ୍ର ମରି ଅଛନ୍ତି ଅନେକ । ଆମେ ଆମର ବହୁ ପ୍ରିୟ ଲୋକଙ୍କୁ ହରାଇ ଅଛୁ ।"

ଗୌତମୀ ସହରର ସବୁ ଘର ବୁଲି ଆସିଲା । ମାତ୍ର ଗୋଟିଏ ହେଲେ ଘର ପାଇଲା ନାହିଁ—ଯେଉଁ ଘରେ ମୃତ୍ୟୁ ହୋଇ ନାହିଁ । ଶେଷରେ ସେ ବୁଝି ପାରିଲା, ବୁଦ୍ଧଦେବ ତାକୁ କାହିଁକି ଏପରି ସୋରିଷ ମାଗି ଆଣିବାକୁ ପଠାଇ ଥିଲେ । "ମୃତ୍ୟୁ ତ ଗୋଟାଏ ଅତି ସାଧାରଣ ଘଟଣା"—ଶେଷକୁ ସେ ଏହି ସତ୍ୟ ଶିକ୍ଷା ପାଇଲା ।

ସେ ମୃତ ପୁତ୍ରକୁ ମାଟି ତଳେ ପୋତି ପକାଇଲା । ତାପରେ ପରଦୁଃଖ କାତର ବୁଦ୍ଧଙ୍କ ପାଖରେ ପହଞ୍ଚିବାରୁ ସେ ଉପଦେଶ ଦେଇଥିଲେ, "ଶୋକ କରି ଲାଭ କଅଣ ? ଚିର ଦିନ କେହି ରହନ୍ତି ନାହିଁ ।"

Digitized by srujanika@gmail.com

# ଦେବଦତ୍ତଙ୍କ ଈର୍ଷା

ବୁଦ୍ଧଦେବଙ୍କ ସମ୍ପର୍କୀୟ ଭାଇ ଦେବଦତ୍ତ ତାଙ୍କର ବାଲ୍ୟସଙ୍ଗୀ । ସିଦ୍ଧାର୍ଥ ସଂସାର ତ୍ୟାଗ କରି ଚାଲିଯିବା ପର୍ଯ୍ୟନ୍ତ ସେ ତାଙ୍କର ସାଥୀ ଥିଲେ। ସେ ସମୟରେ ମଧ୍ୟ ସେ ସିଦ୍ଧାର୍ଥଙ୍କୁ ବିପଦରେ ପକାଇବା ପାଇଁ ବରାବର ଉଦ୍ୟମ କରୁଥିଲେ । ଯୁବରାଜଙ୍କର ଅତି ଆଦରର ଗୋଟିଏ ଧଳା ହାତୀକୁ ମାରି ପକାଇଥିଲେ ।

Digitized by srujanika@gmail.com

ବୁଦ୍ଧତ୍ୱ ପ୍ରାପ୍ତି ପରେ ବୁଦ୍ଧଦେବ ପ୍ରଥମ ହୋଇ ଯେତେବେଳେ କପିଳବାସ୍ତୁ ଆସିଥିଲେ, ସେତେବେଳେ ଶାକ୍ୟ ବଂଶର ବହୁ ଧନୀ, ମାନୀ ବ୍ୟକ୍ତିଙ୍କ ସହିତ ଦେବଦତ୍ତ ମଧ୍ୟ ସଙ୍ଘରେ ଯୋଗ ଦେଇଥିଲେ । ବୁଦ୍ଧଦେବ ତାଙ୍କ ବାଲ୍ୟକାଳର ଖେଳସାଥୀ ଦେବଦତ୍ତଙ୍କ ପ୍ରତି ଅତି ଭଦ୍ର ଓ ସମ୍ମାନ ସୂଚକ ବ୍ୟବହାର କରୁଥିଲେ । ତେଣୁ ସେ ଶୀଘ୍ର ସଙ୍ଘ ମଧ୍ୟରେ ଗୋଟିଏ ଶ୍ରେଷ୍ଠ ସ୍ଥାନ ଅଧିକାର କରି ବସିଲେ ।

ବୁଦ୍ଧଦେବ ସଙ୍ଘର ସର୍ବମାନ୍ୟ ଅଧିନାୟକ ଥିଲେ । ଦେବଦତ୍ତ ଏଥିରେ ଈର୍ଷାନ୍ୱିତ ହୋଇ ଉଠିଲେ । ସେ ନିଜେ ଅଧିନାୟକ ପଦରେ ପ୍ରତିଷ୍ଠିତ ହେବା ପାଇଁ କଳ୍ପନା କଲେ । ପ୍ରଥମେ ସେ ବୁଦ୍ଧଦେବଙ୍କୁ ପରାମର୍ଶ ଦେଲେ, "ଗୁରୁଦେବ, ତୁମେ ବୃଦ୍ଧ ହୋଇ ଗଲଣି । ଏବେ ବିଶ୍ରାମ ନେବା ଦରକାର । ସଙ୍ଘ ଦାୟିତ୍ୱରୁ ଅବସର ନିଅ ଏବଂ ଏହାର ପରିଚାଳନା ଭାର ମୋ ଉପରେ ଛାଡ଼ି ଦିଅ ।"

"ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ ସଙ୍ଘ ପରିଚାଳନା କରୁଥିବି ।" ବୁଦ୍ଧଦେବ ଉତ୍ତର ଦେଲେ । ଦେବଦତ୍ତଙ୍କର ଉଦ୍ଦେଶ୍ୟ କଣ ସେ ତାହା ପରିଷ୍କାର ବୁଝି ପାରିଲେ ।

ସଙ୍ଘର ସର୍ବୋଚ୍ଚ ନେତା ହେବାର ଆଶାରୁ ବଞ୍ଚିତ ହେବାରୁ ଦେବଦତ୍ତ ସଙ୍ଘକୁ ଭାଙ୍ଗି ଦେବା ପାଇଁ ଷଡଯନ୍ତ୍ର କଲେ । ବୁଦ୍ଧଦେବଙ୍କ ତିରୋଧାନର ଆଠ ବର୍ଷ ପୂର୍ବରୁ ସେ ଗୋଟାଏ ପ୍ରତିଦ୍ୱନ୍ଦୀ ସଙ୍ଘ ଗଠନ କଲେ । ସେହି ସଙ୍ଘରେ ତାଙ୍କର କେତେ ଜଣ ବନ୍ଧୁ ଓ ଅନୁଗାମୀ ବ୍ୟକ୍ତି ଯୋଗ ଦେଲେ । ରାଜଗୃହର ପାଞ୍ଚ ଶତ ସନ୍ୟାସୀଙ୍କର ସମର୍ଥନ ମଧ୍ୟ ସେ ପାଇଲେ ।

ବୁଦ୍ଧଦେବ ଏହି ସଙ୍ଘତ୍ୟାଗୀ ଶିଷ୍ୟମାନଙ୍କ ସହିତ କଥାବାର୍ତ୍ତା କରିବାକୁ ସାରିପୁତ୍ର ଓ ମୋଗଲ୍ଲାୟନଙ୍କୁ ପଠାଇଲେ । ସେମାନଙ୍କୁ ଦେଖି ଦେବଦତ୍ତ ମନେ କଲେ, ଏ ଦୁଇ ପ୍ରସିଦ୍ଧ ଶିଷ୍ୟ ମଧ୍ୟ ବୁଦ୍ଧଦେବଙ୍କୁ ଛାଡ଼ି ଏ ସଙ୍ଘରେ ଯୋଗ ଦେବାକୁ ଆସି ଅଛନ୍ତି । ସେ ନିଜ ଦଳର ଶିଷ୍ୟମାନଙ୍କୁ ବୁଝାଇବା ଲାଗି ସେମାନଙ୍କୁ ଅନୁରୋଧ କଲେ ।

ସାରିପୁତ୍ର ଓ ମୋଗଲ୍ଲାୟନ ସଙ୍ଘତ୍ୟାଗୀ ପାଞ୍ଚଶହ ଶିଷ୍ୟଙ୍କ ସହିତ ଯୁକ୍ତିତର୍କ କଲେ । ସେମାନେ ଅତି ନିର୍ବୋଧ ଭଳି ଆଚରଣ ଦେଖାଇଛନ୍ତି ବୋଲି ବୁଝାଇ ଦେଲେ । ଦେବଦତ୍ତଙ୍କ ପ୍ରତିଷ୍ଠିତ କୃତ୍ରିମ ସଙ୍ଘ ଛାଡ଼ି

Digitized by srujanika@gmail.com

ପ୍ରକୃତ ନ୍ୟାୟ ପଥରେ ଚଳିବାକୁ ସେମାନଙ୍କୁ ପ୍ରବର୍ତ୍ତାଇଲେ ।

ଏଥିରେ ଦେବଦତ୍ତ ବିଶେଷ କ୍ରୋଧାନ୍ୱିତ ହୋଇ ଉଠିଲେ । ବୁଦ୍ଧଦେବଙ୍କ ପ୍ରତି ଈର୍ଷା ତାଙ୍କ ମନରେ ଦ୍ୱିଗୁଣିତ ହେଲା । ବୁଦ୍ଧଦେବଙ୍କୁ ମାରି ଦେବା ପାଇଁ ସେ ମନେ ମନେ ସ୍ଥିର କଲେ । ଏହି କାର୍ଯ୍ୟରେ ମଗଧର ରାଜା ବିମ୍ବିସାରଙ୍କ ପୁତ୍ର ଅଜାତଶତ୍ରୁଙ୍କ ସହଯୋଗ ଲୋଡ଼ିଲେ ।

ବିମ୍ବିସାର ବୁଦ୍ଧଦେବଙ୍କର ଏକାନ୍ତ ଅନୁଗତ ଶିଷ୍ୟ । ଦେବଦତ୍ତ ଜାଣନ୍ତି, ଯେ ପର୍ଯ୍ୟନ୍ତ ସେ ବଞ୍ଚି ରହିବେ, ଏ କାର୍ଯ୍ୟରେ ମଗଧର ସାହାଯ୍ୟ ମିଳିବ ନାହିଁ । ତେଣୁ ସେ ଅଜାତଶତ୍ରୁଙ୍କୁ କହିଲେ, "ତୁମ ପିତା ତ ବୁଢ଼ା ହୋଇ ନାହାନ୍ତି । ତାଙ୍କର ମୃତ୍ୟୁ ହେଲେ ସିନା ତୁମେ ରାଜ-ଗାଦିରେ ବସିବ । ଆଉ କେତେ କାଳ ଅପେକ୍ଷା କରିବ ?"

ଅଜାତଶତ୍ରୁ ବିଚଳିତ ହୋଇ ଉଠିଲେ ।

"ତୁମେ ପିତାଙ୍କୁ ହତ୍ୟା କରି କାହିଁକି ରାଜଗାଦି ଅଧିକାର କରୁ ନାହଁ ?" ଦେବଦତ୍ତ ପ୍ରସ୍ତାବ ଦେଲେ ।

ଯୁବରାଜ ଅଜାତଶତ୍ରୁ ଅକ୍ଳେଶରେ ଏଥିରେ ଭୁଲିଗଲେ । ପିତାଙ୍କୁ ହତ୍ୟା କରିବା ପାଇଁ ଷଡ଼ଯନ୍ତ୍ର ଆରମ୍ଭ କରି ଦେଲେ । ଦିନେ ଖଡ୍ଗ ଧରି ସେ ପିତାଙ୍କ କୋଠରୀକୁ ଯାଉଥିଲା ବେଳେ ଭୃତ୍ୟମାନେ ତାଙ୍କୁ ଧରି ରାଜାଙ୍କ ପାଖକୁ ଆଣିଲେ । ମାତ୍ର ପୁତ୍ରକୁ କୌଣସି ପ୍ରକାର ଦଣ୍ଡ ଦେବାକୁ ବିମ୍ବିସାର ଇଚ୍ଛା କଲେ ନାହିଁ । ବୁଦ୍ଧଦେବଙ୍କ ପ୍ରବର୍ତ୍ତିତ ଧର୍ମରେ ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ସବୁ ପ୍ରକାର ହିଂସାକୁ ସେ ଘୃଣା କରୁଥିଲେ । ଗୁରୁଦେବଙ୍କ ସତ୍ ଉପଦେଶ ପ୍ରଭାବରେ ସେ ରାଜ୍ୟ ଶାସନରୁ ଓହରି ଗଲେ ଓ ଅଜାତଶତ୍ରୁଙ୍କୁ ଗାଦିରେ ବସାଇଲେ । ବିମ୍ବିସାର ସଂସାରର ମୋହ ମାୟା ତ୍ୟାଗ କରି ସନ୍ନ୍ୟାସ ବ୍ରତ ଗ୍ରହଣ କଲେ । ତଥାପି ଅଜାତଶତ୍ରୁ ଦେବଦତ୍ତଙ୍କ ପ୍ରରୋଚନାରେ ପଡ଼ି ପିତାଙ୍କୁ ହତ୍ୟା କରିଥିଲେ ।

ଅଜାତଶତ୍ରୁ ରାଜା ହେଲା ପରେ ଦେବଦତ୍ତଙ୍କ ପ୍ରସିଦ୍ଧି ରାଜଗୃହରେ ବଢ଼ିଗଲା । ବୁଦ୍ଧଦେବ ଚତୁର୍ମାସ୍ୟ ବ୍ରତ ପାଳନ କରିବାକୁ ରାଜଗୃହ ବିହାରକୁ ଆସୁଥିବା ସମ୍ବାଦ ମିଳିଲା । ସେହି ଅବସରରେ ତାଙ୍କୁ ହତ୍ୟା କରିବା ପାଇଁ ଦେବଦତ୍ତ ଷଡ଼ଯନ୍ତ୍ର କଲେ ।

Digitized by srujanika@gmail.com

ଅଜାତଶତ୍ରୁଙ୍କ ସୈନ୍ୟ ବାହିନୀରୁ ସେ ଦଳେ ଦକ୍ଷ ଧନୁଶର ବିଦ୍ଧାଳୀଙ୍କୁ ବାଛି ଆଣିଲେ । ବୁଦ୍ଧଦେବଙ୍କ ଯାତାୟାତ ପଥ କଡରେ ବିଭିନ୍ନ ସ୍ଥାନରେ ସେମାନଙ୍କୁ ରଖାଇଲେ ଶର ମାରିବା ପାଇଁ ।

ମାତ୍ର ଯେତେବେଳେ ବୁଦ୍ଧଦେବ ସେମାନଙ୍କ ସମ୍ମୁଖକୁ ଆସିଗଲେ, ତାଙ୍କ ମୁଖମଣ୍ଡଳରେ ସ୍ୱର୍ଗୀୟ ଆଭା ଦେଖି ସୈନ୍ୟମାନେ ପାଦତଳେ ଲୋଟି ପଡ଼ିଲେ । ବିନୟର ସହିତ କହିଲେ, ତାଙ୍କୁ ମାରି ଦେବା ପାଇଁ ସେମାନେ ନିଦ୍ଦିଷ୍ଟ ପାଇଁ ଏଠାରେ ଅପେକ୍ଷା କରିଥିଲେ । ଦୟାଳୁ ବୁଦ୍ଧ ସେମାନଙ୍କୁ କରୁଣା ନେତ୍ରରେ ଗୃହୀ ଦେବଦତ୍ତଙ୍କ ନିକଟକୁ ପଠାଇ ଦେଲେ ।

ଧନୁଶରଧାରୀଙ୍କ ବିଫଳତା ଦେବଦତ୍ତଙ୍କ କ୍ରୋଧ ଅଧିକ ବଢ଼ାଇ ଦେଲା । ସେ ତାଙ୍କ ଗତିବିଧି ସାବଧାନତାର ସହିତ ଲକ୍ଷ୍ୟ କଲେ । କେତେବେଳେ ହତ୍ୟା କରିବାକୁ ସୁବିଧା ମିଳିବ, ସେହି ଚିନ୍ତାରେ ରହିଲେ ।

ଦିନେ ବୁଦ୍ଧଦେବ ଗୃଧ୍ର ପାହାଡ଼ର ପାଦଦେଶରେ ଧ୍ୟାନରତ ରହିଥିଲେ । ଦେବଦତ୍ତ ସେହି ପାହାଡ଼ର ଶିଖରକୁ ଉଠିଯାଇ ଗୋଟିଏ ଅତି ବଡ ପଥର ତଳକୁ ଖସାଇ ଦେଲେ । ପଥର ଅତି ବେଗରେ ଗଡ଼ି ଗଡ଼ି ଆସିଲା । ମାତ୍ର ବୁଦ୍ଧଦେବଙ୍କ ଉପରେ ପଡ଼ିବା ପୂର୍ବରୁ ଗୋଟାଏ ଅତି ଟାଣ ପଥର ସହିତ ଧକ୍କା ଖାଇ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା ।

ଦେବଦତ୍ତ ଏବେ ଅଧିକ ତତ୍ପର ହୋଇ ଉଠିଲେ ବୁଦ୍ଧଦେବଙ୍କ ବିନାଶ ପାଇଁ । ରାଜଗୃହର ସବୁଠାରୁ ବଡ କ୍ରୋଧୀ ହାତୀ 'ନୀଳଗିରି' । ତାର ମାହୁନ୍ତକୁ ସେ ହାତ କଲେ । ତାକୁ ବହୁ ପରିମାଣ ସ୍ୱର୍ଣ୍ଣ ମୁଦ୍ରା ଦେଇ ପ୍ରବର୍ତ୍ତାଇଲେ, "କାଲି ବୁଦ୍ଧଦେବ ଏ ବାଟରେ ଗଲାବେଳେ ତାଙ୍କ ପାଖକୁ ନୀଳଗିରିକୁ ଛାଡ଼ି ଦେବ ।"

ପରଦିନ ସକାଳୁ ପ୍ରତି ଦିନର ନିୟମ ଅନୁସାରେ ବୁଦ୍ଧଦେବ ଭିକ୍ଷା କରିବାକୁ ନଗରକୁ ଗଲେ । ମାହୁନ୍ତ ତାଙ୍କୁ ରାସ୍ତାରେ ଯାଉଥିବାର ଦେଖି ନୀଳଗିରିକୁ ଫିଟାଇ ଦେଲା । କ୍ରୋଧୋନ୍ମତ୍ତ ହସ୍ତୀ ଶୁଣ୍ଢ ଉପରକୁ ଟେକି ଗର୍ଜନ କରି ବୁଦ୍ଧଦେବଙ୍କ ପାଖକୁ ଧପାଇ ଆସିଲା ।

ହାତୀ କ୍ରୋଧରେ ଧାଇଁ ଆସୁ ଥିବାର ଦେଖି ବିଶୃଙ୍ଖଳ ଶିଷ୍ୟ, ଆନନ୍ଦ

Digitized by srujanika@gmail.com

ଯାଇ ବୁଦ୍ଧଦେବ ଓ ହାତୀ ମଝିରେ ଠିଆ ହୋଇଗଲେ । କହିଲେ, "ହାତୀ ପ୍ରଥମେ ମତେ ଦଳି ଦେଉ ।"

ମାତ୍ର ସେତେବେଳକୁ ହାତୀର କ୍ରୋଧ କମି ଯାଇଥିଲା । ବୁଦ୍ଧଦେବ ସ୍ନେହପୂର୍ଣ୍ଣ ଚକ୍ଷୁରେ ଥରେ ମାତ୍ର ତାକୁ ଚାହିଁ ଦେବାରୁ ସେ ଶାନ୍ତ ଓ ସୁବୋଧ ହୋଇଗଲା । ନୀଳଗିରି ଶୁଣ୍ଢକୁ ତଳକୁ ନୁଆଁଇ ଆଣି ତାଙ୍କ ଆଗରେ ଗୋଟିଏ ବିଶୃଙ୍ଖ ଶିଷ୍ଟ ବାଳକ ଭଳି ଠିଆ ହୋଇ ରହିଲା । ବୁଦ୍ଧଦେବ ଅତି କୋମଳ ଭାବରେ ତାହା ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ କଲେ ।

ନୀଳଗିରି ବୁଦ୍ଧଦେବଙ୍କ ପାଦ ପାଖରେ ଆଣ୍ଠୋଇ ବସି ପଡ଼ିଲା । ତା'ପରେ ଧୀରେ ଧୀରେ ଫେରିଗଲା ।

ଏ ଘଟଣା ପରେ ପରେ ଦେବଦତ୍ତ ଅସୁସ୍ଥ ହୋଇ ପଡ଼ିଲେ । ଅନୁତାପରେ ଦଗ୍ଧ ହୋଇ ବୁଦ୍ଧଦେବଙ୍କଠାରେ କ୍ଷମା ପ୍ରାର୍ଥନା କଲେ । କେତେ ଜଣ ଦୟାଳୁ ଶିଷ୍ୟଙ୍କ ସାହାଯ୍ୟରେ ବୁଦ୍ଧଦେବଙ୍କ ଦର୍ଶନ ପାଇଁ ଯାତ୍ରା କଲେ । ମାତ୍ର ଗୁରୁଦେବଙ୍କ ପାଖରେ ପହଞ୍ଚିବା ପୂର୍ବରୁ ପଥରେ ତାଙ୍କର ମୃତ୍ୟୁ ହେଲା । ସେତେବେଳେ ବୁଦ୍ଧଦେବଙ୍କୁ ପ୍ରାର୍ଥନା କରୁଥିଲା ଭଳି ତାଙ୍କ ଓଠ ହଲନାରୁ ବୁଝାଗଲା ।



Digitized by srujanika@gmail.com

# ଅନ୍ତିମ କାଳ

ବୁଦ୍ଧଦେବ ବାର୍ଦ୍ଧକ୍ୟରେ ପହଞ୍ଚିଲେ । ସବୁ ସମୟରେ ତାଙ୍କ ପାଖରେ କେହି ଜଣେ ରହିବା ଦରକାର ପଡ଼ିଲା । ଶିଷ୍ୟମାନଙ୍କ ମଧ୍ୟରୁ ସମସ୍ତେ ପାଖରେ ରହି ସେବା କରିବାକୁ ଇଚ୍ଛା ପ୍ରକାଶ କଲେ । ଯାତିପୁତ୍ର ଆଗଭର ହୋଇ କହିଲେ, "ଗୁରୁଦେବ, ମୁଁ ଆପଣଙ୍କ ପାଖରେ ସବୁ ସମୟରେ ରହିବାକୁ ଚାହେଁ ।"

Digitized by srujanika@gmail.com

"ନା, ନା, ମୁଁ ସେବା କରିବି ।" ମୋଗଲାୟନ ଦାବୀ କଲେ ।

ବୁଦ୍ଧଦେବ କିଛି ସମୟ ଚିନ୍ତା କଲେ । ସାରିପୁତ୍ର ଓ ମୋଗଲାୟନ ଉଭୟେ ସଂଘର ପ୍ରଭାବଶାଳୀ ସଭ୍ୟ । ସଂଘ ପରିଚାଳନାରେ ସେମାନଙ୍କର ଦକ୍ଷତା ଅଧିକ । ଯଦି ସେ ଦୁହିଁଙ୍କ ମଧ୍ୟରୁ କେହି ତାଙ୍କ ପାଖରେ ଆବଦ୍ଧ ରହିବେ, ତେବେ ସଂଘର କ୍ଷତି ହୋଇପାରେ । ପୁଣି ସେ ଦୁହେଁ ମଧ୍ୟ ବୁଢ଼ା ହୋଇ ଆସିଲେଣି । ଯୁବକ ଆନନ୍ଦ ତାଙ୍କର ସମ୍ପର୍କୀୟ ଭାଇ । ପୁଣି ସେ ଜଣେ ଆଦର୍ଶ ଅନୁଗତ । ତେଣୁ ବୁଦ୍ଧଦେବ ତାଙ୍କ ପାଖରେ ରହିବାକୁ ଅନନ୍ଦଙ୍କୁ ହିଁ ଅନୁମତି ଦେଲେ ।

ଆନନ୍ଦ ଗୁରୁଦେବଙ୍କର ଅତି ପ୍ରିୟ ଶିଷ୍ୟ ଭାବରେ କୋଡ଼ିଏ ବର୍ଷ ତାଙ୍କ ପାଖେ ପାଖେ ରହି ସବୁ ପ୍ରକାର ସେବା ଯତ୍ନ କରିଥିଲେ । ବୟସ ଅଶି ବର୍ଷ ହେଲେ ମଧ୍ୟ ବୁଦ୍ଧଦେବ ବିଭିନ୍ନ ସ୍ଥାନ ବୁଲି ଲୋକଙ୍କୁ ସତ୍‌ଶିକ୍ଷା ଦେଉଥିଲେ ।

ଗଣତନ୍ତ୍ର ରାଷ୍ଟ୍ର, ଲିଚ୍ଛାବିର ବୈଶାଳୀଠାରେ ବୁଦ୍ଧଦେବ ତାଙ୍କର ଶେଷ ଜୀବନ ଅତିବାହିତ କରିଥିଲେ । ନର୍ତ୍ତକୀ ଅମ୍ବାପଲ୍ଲୀଙ୍କ ଉଦ୍ୟାନରେ ଗୋଟିଏ ଆମ୍ବ ଗଛ ମୂଳରେ ସେ ବିଶ୍ରାମ ନେଲେ । ସେହି ସମ୍ବାଦ ପାଇ ଅମ୍ବାପଲ୍ଲୀ ନିଜର ଶ୍ରଦ୍ଧା ଭକ୍ତି ଅର୍ପଣ କରିବାକୁ ତାଙ୍କ ପାଖକୁ ଆସିଲେ । ରାତ୍ରି ଭୋଜନ ପାଇଁ ଭିକ୍ଷୁମାନଙ୍କ ସହ ତାଙ୍କୁ ନିଜ ଘରକୁ ନିମନ୍ତ୍ରଣ କଲେ ।

ଲିଚ୍ଛାବିର ଗର୍ବୀ ଶାସକବୃନ୍ଦ ଠିକ୍ ସେହି ଦିନ ସମ୍ମାନ ପ୍ରଦର୍ଶନ କରିବାକୁ ବୁଦ୍ଧଦେବଙ୍କ ପାଖକୁ ଆସିଥିଲେ । ସେମାନେ ମଧ୍ୟ ବୁଦ୍ଧଦେବ ଓ ତାଙ୍କ ଶିଷ୍ୟବୃନ୍ଦଙ୍କୁ ରାତ୍ରି ଭୋଜନ ପାଇଁ ନିମନ୍ତ୍ରଣ କଲେ ।

ମାତ୍ର ବୁଦ୍ଧଦେବ ତାଙ୍କ ନିମନ୍ତ୍ରଣ ଗ୍ରହଣ କଲେ ନାହିଁ । କହିଲେ, "ଅମ୍ବାପଲ୍ଲୀଙ୍କ ଘରକୁ ଯିବା ପାଇଁ ମୁଁ ଆଗରୁ ସମ୍ମତି ଦେଇ ସାରିଛି ।"

"ସାମାନ୍ୟ ଜଣେ ନର୍ତ୍ତକୀ ଅପେକ୍ଷା ଆମେମାନେ କଅଣ ଏତେ ନଗଣ୍ୟ ?" ଶାସକବୃନ୍ଦ କ୍ଷୋଭ ପ୍ରକାଶ କଲେ ।

ବୁଦ୍ଧଦେବ ସେମାନଙ୍କ କଥାକୁ କର୍ଣ୍ଣପାତ କଲେ ନାହିଁ । ବଡ଼, ସାନ ଉଭୟେ ତାଙ୍କ ପାଖରେ ସମାନ । ସେ ଅନୁଭବ କଲେ ନର୍ତ୍ତକୀର ବିଶ୍ୱାସ ଓ ଦୟା ଏହି ଗର୍ବୀ ଶାସକଙ୍କ ଅପେକ୍ଷା ଉଚ୍ଚରେ ।

Digitized by srujanika@gmail.com

ଉକ୍ତ ଭୋଜନ ପରେ ବୁଦ୍ଧଦେବ ନିକଟବର୍ତ୍ତୀ ଗୋଟିଏ ଗ୍ରାମକୁ ଆସିଲେ । ସେଠାରେ ସେ ଗୁରୁତର ଅସୁସ୍ଥ ହୋଇ ପଡ଼ିଲେ । ଆନନ୍ଦ ଜାଣି ପାରିଲେ ଯେ ଶେଷ ସମୟ ନିକଟବର୍ତ୍ତୀ । ସେ ପ୍ରାର୍ଥନା କଲେ, "ମୋତେ ଛାଡ଼ି ଚାଲି ଯାଆନ୍ତୁ ନାହିଁ ।" ଗୋଟିଏ ଅସହାୟ ଶିଶୁ ପରି କାନ୍ଦି କାନ୍ଦି କହିଲେ, "ଆପଣ ଚାଲିଗଲେ ଆମକୁ ବାଟ ଦେଖାଇବ କିଏ ?"

"ବ୍ୟସ୍ତ ହୁଅ ନାହିଁ ଆନନ୍ଦ । ମୋର ଉପଦେଶ ଏବଂ ସଂଘ ତୁମର ପଥ ପ୍ରଦର୍ଶକ ହେବ ।" ବୁଦ୍ଧଦେବ ସାନ୍ତ୍ୱନା ଦେଲେ ।

କ୍ରମେ ସେ ଆରୋଗ୍ୟ ଲାଭ କଲେ । ତା' ପରେ ଅଧିକ ସ୍ଥାନ ବୁଲି ଅଧିକ ଲୋକଙ୍କୁ ଧର୍ମଶିକ୍ଷା ଦେବା ପାଇଁ ବ୍ୟସ୍ତ ହୋଇ ଉଠିଲେ । ସେ ତାଙ୍କ ଶିଷ୍ୟ ଭକ୍ତମାନଙ୍କ ସହିତ ଆଲୋଚନା କଲେ । ବୈଶାଳୀର ଭକ୍ତ-ମାନଙ୍କୁ ସମ୍ମିଳିତ କରାଇ ତାଙ୍କର ଶେଷ ବାର୍ତ୍ତା ଶୁଣାଇଲେ ।

"ପ୍ରତ୍ୟେକ ବ୍ୟକ୍ତି ସଂସାରରେ ଜଣେ ଆଶ୍ରୟପ୍ରାର୍ଥୀ । କେହି ଚିର-ସ୍ଥାୟୀ ନୁହଁନ୍ତି । ସମସ୍ତେ ନିଜ ଭିତରେ ଶୃଙ୍ଖଳିତ । ଯେ ନିଜ ମନକୁ ଶୃଙ୍ଖଳାରେ ରଖି ଚଳିବ, ସେହି କେବଳ ସତ୍ୟର ସନ୍ଧାନ ପାଇବ ଏବଂ ଧର୍ମ ଜୀବନ ଅତିବାହିତ କରିବାକୁ ସମର୍ଥ ହେବ ।

ବୈଶାଳୀରୁ ଗୋଟିଏ ଯାନରେ ବୁଦ୍ଧଦେବ କୁଶୀନଗର ଯାତ୍ରା କଲେ । ବାଟରେ 'ଚୁଣ୍ଡା' ନାମକ ଜଣେ କମାର ଶାଳରେ ଆଶ୍ରୟ ନେଲେ । ଚୁଣ୍ଡା ତାଙ୍କୁ ଯେଉଁ ଖାଦ୍ୟ ଦେଲେ ତାହା ବୋଧହୁଏ ଜରାଜୀର୍ଣ୍ଣ ଦୁର୍ବଳ ଶରୀର ପ୍ରତି ଅତି ଗୁରୁପାକ ଥିଲା । ଆତିଥେୟୀଙ୍କ ମନରେ ଦୁଃଖ ହେବ ଭାବି ଦୟାଳୁ ବୁଦ୍ଧ ଅନିଚ୍ଛାସତ୍ତ୍ୱେ ତାହା ଭୋଜନ କଲେ । ଫଳରେ ଅତ୍ୟନ୍ତ ରୁଗ୍ଣ ହୋଇ ପଡ଼ିଲେ । ତାହା ସତ୍ତ୍ୱେ ସେ ସେହି ଅବସ୍ଥାରେ କୁଶୀନଗର ଯାତ୍ରା କଲେ ।

ସେଠାରେ ପହଞ୍ଚି ଦୁଇଟି ଶାଳ ଗଛ ଛାୟାରେ ଖଣ୍ଡିଏ ପରିଷ୍କାର ଚାଦର ବିଛାଇ ଦେବାକୁ ଆନନ୍ଦଙ୍କୁ କହିଲେ । କେତେ ସମୟ ସେଠାରେ ବିଶ୍ରାମ ନେଲେ । ପରେ 'ମାଲ୍ଲ' ରାଜ୍ୟର ଗଣ୍ୟମାନ୍ୟ ବ୍ୟକ୍ତି ମାନେ ଏହି ଶ୍ରେଷ୍ଠ ସନ୍ନ୍ୟାସୀଙ୍କୁ ସମ୍ମାନ ପ୍ରଦର୍ଶନ ଲାଗି ତାଙ୍କ ପାଖକୁ ଆସିଲେ । ଆଲୋଚନା ପରେ ସେମାନେ ବିଦାୟ ନେବାରୁ ବୁଦ୍ଧଦେବ ବିଶ୍ରାମ ନେଲେ ।

Digitized by srujanika@gmail.com



ସେତିକିବେଳେ ସନ୍ନ୍ୟାସୀ 'ସୁବାଦ୍ର' ସେଠାରେ ପହଞ୍ଚିଲେ ଏବଂ ଦେଖା କରିବାକୁ ଇଚ୍ଛା ପ୍ରକାଶ କଲେ ।

"ଗୁରୁଦେବ ବଡ କ୍ଲାନ୍ତ । ବର୍ତ୍ତମାନ ସେ ବିଶ୍ରାମ ନେଉଛନ୍ତି ।" ବିନୟର ସହିତ ଆନନ୍ଦ କହିଲେ ।

ବୁଦ୍ଧଦେବ ଏ କଥାବାର୍ତ୍ତା ଶୁଣି ପାରିଲେ । ସାଧୁଙ୍କୁ ପାଖକୁ ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ମୃତ୍ୟୁ ଶଯ୍ୟାରେ ମଧ୍ୟ ସେ କାହାରିକୁ ନିରାଶ କରିବାକୁ ଚାହୁଁ ନ ଥିଲେ । ସାଧୁ ତାଙ୍କର ଉପଦେଶ ଶୁଣି ମୋହିତ

Digitized by srujanika@gmail.com

ହେଲେ ଓ ତାଙ୍କ ସଙ୍ଗେ ସଙ୍ଘରେ ଯୋଗ ଦେଲେ । ସୁଭଦ୍ର ହେଉଛନ୍ତି ତାଙ୍କ ସର୍ବଶେଷ ଶିଷ୍ୟ ।

ବୁଦ୍ଧଦେବଙ୍କ ଅବସ୍ଥା କ୍ରମେ ଖରାପ ହେବାକୁ ଲାଗିଲା । ପାଖ ଆଖ ଅଞ୍ଚଳର ଶିଷ୍ୟ-ଭକ୍ତମାନେ ମୃତ୍ୟୁ ଶଯ୍ୟା ପାଖରେ ଆସି ଏକତ୍ରିତ ହେଲେ । ବୁଦ୍ଧଦେବ ତାଙ୍କର ଶେଷ ବାର୍ତ୍ତା ସେମାନଙ୍କୁ ଦେଇ କହିଥିଲେ, "ମୃତ୍ୟୁ ସୁନିଶ୍ଚିତ । ତେଣୁ ଭଲ ମଣିଷ ହେବା ପାଇଁ ସବୁ ସମୟରେ ଚେଷ୍ଟା କର ।"

ସଙ୍ଗେ ସଙ୍ଗେ ଏହି ମହାନ୍‌ଗୁରୁଙ୍କ ଚକ୍ଷୁ ମୁଦ୍ରିତ ହୋଇଗଲା । ଆତ୍ମା ନିର୍ବାଣ ପ୍ରାପ୍ତ ହେଲା ।

ବୁଦ୍ଧଦେବଙ୍କ ପ୍ରଦତ୍ତ କିରଣ ତାଙ୍କ ତିରୋଧାନ ପରେ ବିଲୟ ଭଜିଲା ନାହିଁ । ମୃତ୍ୟୁ ପୂର୍ବରୁ ତାଙ୍କ ପ୍ରବର୍ତ୍ତିତ ଧର୍ମ ଦେଶ ବ୍ୟାପୀ ପ୍ରଭାବ ବିସ୍ତାର କରି ପାରିଥିଲା । ମାତ୍ର ବର୍ତ୍ତମାନ, ମୃତ୍ୟୁର ଅଢେଇ ହଜାର ବର୍ଷ ପରେ ମଧ୍ୟ ତାହା ଆମର ପଥ ପ୍ରଦର୍ଶକ ହୋଇଛି । ବୁଦ୍ଧଦେବଙ୍କ ପ୍ରବର୍ତ୍ତିତ ଧର୍ମ ଚକ୍ର ଆମ ଜାତୀୟ ପତାକାରେ ଏବେ ଶୋଭା ପାଉଅଛି । ତାହା ନ୍ୟାୟ ଓ ସତ୍ୟର ପ୍ରତୀକ ।

ତିରୋଧାନ ପରେ ବୁଦ୍ଧଦେବଙ୍କ ଉପଦେଶ ଭାରତ ବାହାରେ ବେଶ୍ ବିସ୍ତାର ଲାଭ କରି ଅଛି । ସମ୍ରାଟ ଅଶୋକଙ୍କ ପ୍ରଚେଷ୍ଟାରେ ଏହା ସମ୍ଭବ ହୋଇଛି । ପୂର୍ବରେ ବ୍ରହ୍ମଦେଶ, ଇଣ୍ଡୋଚୀନ, ଦକ୍ଷିଣରେ ଶ୍ରୀଲଙ୍କାରେ ଏହା ବିସ୍ତାରିତ । ଉତ୍ତର ପୂର୍ବରେ ତିବ୍ବତ, ଚୀନ ଜାପାନର ଅଧିବାସୀ ମଧ୍ୟ ବୌଦ୍ଧ ଧର୍ମାବଲମ୍ବୀ । ବିସ୍ତୃତ ଅଞ୍ଚଳରେ ସେହି ପବିତ୍ର ଧ୍ୱନି ଏବେ ଶୁଣା ଯାଉଛି ।

ବୁଦ୍ଧମ୍ ଶରଣଂ ଗଚ୍ଛାମି
ଧମ୍ମମ୍ ଶରଣଂ ଗଚ୍ଛାମି
ସଙ୍ଘମ୍ ଶରଣଂ ଗଚ୍ଛାମି

*Printed at* : Karan Printers, New Delhi - 110020

Digitized by srujanika@gmail.com

